ପୁରେ ରହିଥିଲ । କାଳ ବଞ୍ଚିଥିଲ । ଏଥିକି ଆସିଲ ଚନ୍ଦ୍ରାରେ ସାରିଲି । କହେ ରଘୁନାଥ । ଏ ବନେ ଅନାଥ କରି ଦେଇ ହେଲୁ ଭିନ ଗୋ । ସ । ୪ । ୧୫ ।

ରାଗ ସିନ୍ଧୁଡ଼ା । ଏକତାଳି ।

ଜୀବ ସଙ୍ଗିନ । ମତେ ତୁ ଭୁଲାଇଲୁ ରେ । କୁଳଶୀଳ-ପ୍ରେମ ଛଡ଼ାଇଲୁ ରେ । ପଦ ।

ସେ ମୋହନର ପ୍ରସଙ୍ଗ । ଶୁଣାଇ ମୋହର ଅଙ୍ଗ । ଧନୁ ଧନୁ ଚନ୍ଦ୍ରାରେ ସଢ଼ାଇଲୁରେ । ଜୀ । ୧ ।

ତା ନଟ କୁଟରେ ପଡ଼ି । ଅନୁବରତରେ ଅଡ଼ି । ତାଠାରେ ମୋ ସରାଗ ବଢ଼ାଇଲୁ ରେ । ଜୀ । ୨ ।

ଜାଣୁ ଅବା କି ମନ୍ତ୍ର । ମତେ ତୁ କରି ଯନ୍ତ୍ର । ସେ ପ୍ରୀତରେ ମୋ ମତି ଜଡ଼ାଇଲୁ ରେ । ଜୀ । ୩ ।

ଦ୍ୱିଜ ରଘୁନାଥ କହି । ତାର କଥା କହି କହି । ନିରନ୍ତରେ ପଛରେ ଗୋଡ଼ାଇଲୁ ରେ । ଜୀ । ୪ । ୧୬ ।

ମାଳିନୀ ବୃତ୍ତ ।

ପହିଲୁ କହିଲୁ ନାହିଁ ଦୂତି ତା ଧୂର୍ତ୍ତବାଣୀ ।
ନିପଟ କପଟ ବୋଲି ଜାଣିଲି ପ୍ରୀତି ହାନୁ ।
ମଦନ କଦନ ଯେତେ ଦେଉଛି ବାଣଘାତେ ।
ସହି ରହିଲି ମୁଁ କୁଞ୍ଜେ ତୋର ଭାଷାକୁ ମାନି । ୧୮ ।

ରାଗ ମାଳବ । ଆଡ଼ତାଳି ।

ଏହିପରି ସେ କଲେ ରଜନୀ । ଏଡା ସହିବି କି ମୁଁ ପ୍ରାଣ-ସଜନି । କହିଥିଲେ ସେ ଯେତେ । ରହିଲି ନାହିଁ ସେତେ । ବହି କାହିଁ ରତି ରସ ମୋହିଲେ ନାହିଁ ମୋତେ । ଏ । ୧ ।

ଦେଖି ମଦନ ଏଣୁ ରଡ କା । ଶର ଯୋଖି ନରତେ ମୋର ଚ୍ଛତ କା । ଲେଖି ଲେଖି ବନ୍ଧୁ ବା । ରଖିଦେ ତ ମନ ଦେବ, ଅଖିଳ ସୁଖକୁ ଉପେଖିବା ମତ ହେବ । ଏ । ୨ ।

ଜଗାଇ ମୋତେ ସଙ୍କେତ ରେ । ଏବେ ଦଗା ଦେଲେ ମାତ ସେ ଇତରେ । ଆଗାରୁ ଅଣାଇ । ଲଗାଇ ସ୍ନେହ ସଣ୍ଣ । ଲଗାଲଗି କଥାରେ । ଉଗାର ହସାଇ । ଏ । ୩ ।

କବିଚନ୍ଦ୍ର ରଘୁନାଥ ଏ ବାଣୀ । କହେ ଏ ବିରସ ଗୀତକ ଶୁଣି । ଅବଲମ୍ବରେ ଏବେ । ସେ ବିଜୟ କରିବେ । ନଗ୍ନା ତୋସଙ୍ଗେ । ସେ ବିଶେଷେ ରଖିବେ । ଏ । ୪ । ୧୭ ।

ମାଳିନୀ ବୃତ୍ତ ।

ଅନୁସର ଧର ପାଣି ସେ ଗିରୀଧାରୀ ଏବେ ।
ପରିହର କସ ପାଇଁ ସେ ପରା ଚିତ୍ତ ପ୍ରୀତି ।
ହରିବିଜତ ସୁମଧ୍ୟା ସେ ହରୀନେତ୍ରୀ ଧନ୍ୟା ।
ହରି ହରି ହରିଲ ଯେ ଶ୍ରୀହରୀ ସଙ୍ଗ ରାଧୀ । ୧୯ ।

ରାଗ ଶ୍ରୀ । ଏକତାଳି ।

ସେ ମୋହନଙ୍କୁ । ସ୍ନେହ କେ ମୋହିଲ ଗୋ । ପଦ ।

ସ୍ନେହେ କେ ମୋହିଲ । ସୁରତ ବହିଲ । ତାର କାମନା ଯେତେ ସଫଳ ହୋଇଲ । ୧ ।

ସରାଗେ କହିଲ, କୁଞ୍ଜରେ ରହିଲ । ତା ତନୁକୁ ଅତନୁ ଶରେ ନ ଦହିଲ । ୨ ।

ଅଙ୍କରେ ବସିଲ । ଅଙ୍ଗରେ ମିଶିଲ । ସଜନୀ ଏ ରଜନୀ । ହରଷରେ ବଞ୍ଚିଲ । ୩ ।

କଣୋଷ୍ଠ ଘପିଲ । ଘବକୁ କଟିଲ । କବ-ରଜମାନାଥ ରଘୁନାଥ ଭଣିଲ । ୪ । ୧୮ ।

ରାଗ ଶ୍ରୀ ! ଆଡ଼ତାଳ ।

ସହ୍ନ କେହ୍ନ ମୋହ୍ନଲ ଗୋ । ପଦ ।

କହ୍ନଲେ ଯେତେ । ମୋହ୍ନଲେ ତେତେ । ରହ୍ନଲେ ଲୀଳା କାହ୍ନି ବହ୍ନ ସେ କେତେ । ୧ ।

କୋପରେ ଅତି ପରତାପ ହୋଇଛି ସୁର । ଧାପ ଦେଉଛି ଏବେ ମୋ ପରେ ନିରନ୍ତର । ୨ ।

ମନ୍ଦପଣେ ଚୁହାଇ । ମନ୍ଦପାଳ ଡାକଇ, ମନ୍ଦ ପବନ ଅରବିନ୍ଦ-ବନ୍ଧୁ ବହଇ । ୩ ।

ଦ୍ୱିଜ-ରଘୁନାଥ ଭଜଇ ନିରତ । ସେ ଜୁଗଳ-ପଥ । ହେଜ ଜନେ ନିରତ । ୪ । ୧୯ ।

ଶିଖରଣୀ ବୃତ୍ତ ।

ସ୍ପୃହା କାହା ବାହାଯୁଗଳ ପରିରମ୍ଭେ ତ ରହ୍ନଲେ ।
ସୁଧାରେ ଶ୍ରଦ୍ଧାରେ ବଦନ-କମଳେ ଚୁମ୍ବ ଝହ୍ନଲେ ।
ନଚେନ୍ତ୍ରେ ଶବେ ସଛକ ରଖିଲେ କୌତୁକ ବଣେ ।
ମୁଁ ସେ ଶନ୍ତ୍ରେ ଧ୍ୟାନ୍ତ୍ରେ ଭ୍ରମି କ ରହ୍ନଲେ କାନ୍ତ ଗହ୍ନନେ ।୨୦।

ରାଗ ଆଶବାଗ୍ଧ । ଏକତାଳି ।

ଆସିଲେ ନାହିଁ କାହିଁ ପାଇଁ ଶ୍ୟାମ । ପଦ ।

ଆସିବ ବୋଲି କହି । ଆଣି କୁଞ୍ଜେ ଜଗାଇ । ତୋଷିଲେ କାହା ମନ ସେହ୍ନ । ୧ ।

ସଖୀଏ କଉତୁକେ ସଙ୍ଗ ହୋଇ ଉତ୍ସୁକେ । ରଖାଇଲେ କି ଅଟକାଇ । ୨ ।

ଅନ୍ଧକାର ବନରେ । ଆସନ୍ତେ ସଙ୍କେତରେ । ବନ୍ଧ ହେଲେ କି କେଉଁଠାଇଁ । ୩ ।

କହଇ ରଘୁନାଥ । କବି-ରାଜମାନାଥ । ଶ୍ରୀହରି ପାଦପଦ ଧ୍ୟାଇ । ୪ । ୨୦ ।

ରାଗ ନାଟକୁରଙ୍ଗ । ଆଡ଼ତାଳ ।

ଗୁହାଁ ସଜନ କି ହେଲା ଗୋ । ପଦ ।

ଯାହାର ଭୁଲେ । ବେହାର କଲେ । ତାହାକୁ ସେ । ବାହା ବଶେ । ସାହା ହେଲେ । ୧ ।

ପାଣି ଧଇଲେ । ବାଣୀ କହିଲେ । ଆଣି ମିତ ପୁଣି । ସେ ତ ଆଣି ନେଲେ । ୨ ।

ଅତି ତୋଷରେ ରତି-ରସରେ । ରାତି ହରି ମାତି ହରି ପ୍ରୀତି କଲେ । ୩ ।

ମାର ନ ରତେ । ମାରଇ ମୋତେ । ସେ ରସିକବର ଦେଶ ଦୂର ହେଲେ । ୪ ।

ନାଥ ନଇଲେ ସାର୍ଥ ନ କଲେ । ପଥ ଜଗୁ ବ୍ୟର୍ଥ ରଘୁନାଥ ବୋଲେ । ୫ ।

ଶାର୍ଦ୍ଦୂଲବିକ୍ରୀଡ଼ିତ ବୃତ୍ତ ।

ମାଳା ଚନ୍ଦନ ନାଗବଲ୍ଲି ତତ୍ତ ମୁଁ କର୍ପୂର ସଙ୍ଗେ ରଖି ।
ଜାଣ ସେବକୀ ପାଖୁଡ଼ା ତଳପରେ ହୃଷ୍ଟେ ତ ପିନ୍ଧିଇଲି ।
ପଞ୍ଜେ ପୁଷ୍ପବିତାନ ବାନ୍ଧି ସଦନେ ଜାଳି ପ୍ରଦୀପାବଳି ।
କାନ୍ତ କାନନ ଚନ୍ଦ୍ରିକାବତ କଲେ ବ୍ୟର୍ଥେ ତ ଜାଗ୍ରତ୍ରୀ ।୨୧।

ରାଗ ମାରୁଆ । ଆଡ଼ତାଳି ।

ଆଜି ବରଜ ଯୁବରାଜ କି କଲେ ମତେ । ମୋ ଜୀବ ସଖୀ ବୃନ୍ଦାରେ । ମାନର ନେବ ବୋଲି । ଏକରେ ଜଗିଥିଲି । ଚେତନହାନ ହୋଇ । ଲଜରେ ମୁଁ ପଡ଼ିଲି । ୧ ।

ସାଜିଥିଲି ଶେଯ । ରାଜୀବମୁଖ ମନ ରଞ୍ଜକ ସୁସ୍ନେହରେ ଗୋ । ନେତ୍ରଜବାଞ୍ଛା ସେ ମତେ । ହେଳି କାମ ନିରତେ, ରଜ ରାଜ ବଶିଖ ବନ୍ଦ ମାରେ ଦେହରେ । ୨ ।

ରାସରସିକ ମୃଦୁଭାଷକୁ ଶୁଣି ପ୍ରାନ୍ତ ଆଶ ମୋ ବଳିଥିଲା ଗୋ । ତୋଷରେ ମୁଁ ନିକୁଞ୍ଜବାସରେ ବସିଥିଲି । ବାସ ସୁମନଭୂଷା ବେଶ ବିଫଳ ହେଲା । ୩ ।

ଜାଳି ଆଜ ପ୍ରଦୀପ ବନମାଳ କଳାପ ଗୁଳିଥିଲି ନିଶରେ ଗୋ । ଆଳି ଗୁଞ୍ଜାକୁସୁମ .ଥାଳ ମୁଁ ରଖିଥିଲି । ଜାଳଦେଇ ସଖି କାମକୁ କାଳ ଦେଲେ ପ୍ରୀତିରେ । ୪ ।

ରାଧରଙ୍ଗିଣୀ ନିଗଣ ଭାଷ ଏପରି ଭାଷନ୍ତେ ସନ୍ଥକ ଗୁନ୍ଦିଁ । ଧ୍ୟାଇ ରଘୁନାଥ ରୋଷ ନ କର ଚିତ୍ତ କେଶବଙ୍କୁ ଆଶ୍ରିତ ପାଶକୁ ଦୁଃଖ କହ । ଆ । ୫ ॥ ୨୧ ॥

ମନ୍ଦାକ୍ରାନ୍ତା ବୃତ୍ତ ।

ତାରେ ବାରେ କହୁ କହୁ ମତେ କୁଞ୍ଜବାସେ ଥିବାରେ ।
ଯାରେ ଗାରେ ଗଣିଥିଲି ସତେ ସ୍ନେହ ମଧ୍ୟେ ରସାରେ ।
କ୍ଷୀରେ କ୍ଷାର ପ୍ରଣୟ କଲି ଗୋ ବାଣି ତା ପାଣିଗାରେ ।
ଯା ରେ ଦୂତି ପରତେ ନ କରେ ଘାଟିଲେ ସେ ହଜାରେ ॥ ୨୨ ॥

ରାଗ-ଚୋଢ଼ି । ଆଡ଼ତାଳ ।

ସନ୍ତ୍ଵ ଗୋ ଆଜ ଏଣିକ । କହିଲେ କେତେ ପରତେ । ନାହିଁ ସେ ବେନୁପାଣିକ । ପଦ ।

ଶପ୍ନେ ଲଭେ ନ ସ୍ଵଳ୍ପ । ଥପୁରେ ଦନ୍ତେ ନ ରନ୍ଧ୍ର, ଅପ୍ନକୁ ରୁନ୍ଧି ରୁନ୍ଧି । ନପୁନୁଁ ତେଜ ପାଣିକ । ୧ ।

ସଞ୍ଜବେଳୁ ବେଶ ସାଜ । କୁଞ୍ଜରେ ଥିଲି ମୁଁ ଆଜ । କଞ୍ଜ-ନେନ୍ର ତେଜ ରାଜ । ଭଞ୍ଜନ କଲେ ଆଣିକ । ୨ ।

ଭରମେ ପଡ଼ିଲ ଯାହା । କରମେ ଥିଲି କ ଏହା । ମରମେ ନାହିଁ ଜ୍ଞପ୍ରାହା । ନରମେ ମନ କେଣିକ । ୩ ।

କବଚନ୍ଦ୍ର ଦେନୁନାଥ । ଜାତ କହେ ବୋର ଚିତ୍ତ । ଥବର କର ଗୋ ସତ । ଯିବ ମୁଁ ଆଣି ଚେଣିକ । ୪ । ୨୨ ।

ମାଳିନୀ ବୃତ୍ତ ।

କୁମୁଦ କୁମୁଦନାନେ କାନ୍ତରେ ନେନ ମୋଦେ ।
ସୁମନ ସୁମନ ଲଭେ ସାନ୍ଦ୍ର ଧ୍ଵାନ୍ତ ନାଶେ ।
କମଳ କୁଳ ବନଦ୍ରେ କାମଦର୍ପ-ପ୍ରଗାଢ଼େ ।
ସୁମନ-ବଠ-ଦଗନ୍ତେ ଚନ୍ଦ୍ରବ୍ରିନ୍ତ ଆସି । ୨୩ ।

ରଥୋଦ୍ଧତା ବୃତ୍ତ ।

ଅମ୍ବରେ ଧରୁତ ଚନ୍ଦ୍ରମଣ୍ଡଳ ।
ଶମ୍ବରାର ଶର ପୀଡ଼ିତାଧିକେ।
ଅମ୍ବ-ଜାତ ନୟନା ମନେ ମହା—
ଦମ୍ଭରେ କଥିତ ଆଳ ସମ୍ମୁଖେ ।

ରାଗ-ଆହାରି । ଅଠତାଳି ।

କାହିଁକି ଏ କୁଞ୍ଜ ବନକୁ ଆସିଲି । ସଙ୍ଗିନୀ ରେ । ସହିଲି ଏ ଦୁଃଖ ଚିନ୍ତାରେ ଭାସିଲି । ୧ ।

ସୁଧାକର ଆସି ଉଦୟ ହୋଇଲା । ଉଦ୍ଧାର ହୋଇବା ପଥ ନ ଦିଶିଲା । ୨ ।

ଯେ ଯେତୁ ସଙ୍କେତ ଦେଇ ନ ଆସିଲେ । ମୋ ଯଉବନକୁ ଅକାରଣ କଲେ । ୩ ।

ସଦନରେ ସୁଖ କାଳ ବଞ୍ଚୁଥିଲି । ମଦନ କରରେ ଏବେ ମୁଁ ପଡ଼ିଲି । ୪ ।

କବିସୁଧାନିଧି ରଘୁନାଥ ବୋଲେ । ଏ ବିଚ୍ଛେଦ ଯିବ ମୋହନ ଆସିଲେ । ଘ । ୫ । ୨୩

ଶାର୍ଦ୍ଦୁଲବିକ୍ରୀଡ଼ିତ ବୃତ୍ତ ।

ବନ୍ୟାଗୃହ ପରି ନିକୁଞ୍ଜ ସଦନେ ବାଞ୍ଛାନ୍ତରେକେ ରହି ।
ଧନ୍ୟା ହେବି ମଣି ମୁଁ କୃଷ୍ଣସହିତେ ତୋଷେ ତ ପ୍ରେମା ବହି ।
ପୁଣ୍ୟାତ୍ୟନ୍ତ ପୁର୍ବ ମୁଁ ଯେ ନ ବହିଲି ପ୍ରାୟେ ପ୍ରୟାଗାଦିରେ ।
ଶୂନ୍ୟାଗାରପ୍ରଦୀପପ୍ରାୟ ସବୁ ତା ସଙ୍ଗେ କଲି କାମନା । ୨୪ ।

ରାଗ-ହୁସେନୀ । ଆଡ଼ତାଳି ।

ଶ୍ୟାମ ଲାଗି ମୁଁ ହେଲି ଦୁଃଖ ଭାଗୀରେ । କାମନା କରି ଏକା କୁଞ୍ଜରେ ଜଗି । ପଦ ।

• ଝାମ ଲଭିଲି ଏବେ ଯାମ ଯାମକୁ । ବାମଦେବର ଶରଣରେ । ମୋ ମନେ ହେଜ-ଥିଲି ପ୍ରେମରେ ମଜ୍ଜି । ମୋହନଙ୍କୁ ମୋହିବି ବୋଲି, ରତି ରସରେ । ୧ ।

ଭାଷିଥିଲେ ସେ ମୋତେ ଆସିବ ବୋଲି । ନାଶିଲେ କପଟେ ଭୁଲାଇ । ଦୋଷୀ ମୁଁ, ନୁହଇ କଶୋରଠାରେ ସନ୍ଧି । ବସି ବସି ନଶି ଆସି ଗଲାନ ପାନ୍ଥ । ୨ ।

ସାର କର ମୁଁ ମାନ ତାର ବଚନକୁ ସ୍ଥିର କଲି ଧରମ ଯେତେ। ପାର ମୁଁ ଦେବ କେନ୍ତ । ମାର ମୁଖରୁ ସନ୍ଧି । କା ରସତାୟ ରସି ସେ ଦୂର କଲେ ଯେ ମୋତେ । ୩ ।

ରାସ-ରଙ୍ଗିଣୀ ନବସ-ଭାଷ ଶୁଣି ଭାଷଇ ଦ୍ୱିଜରଘୁନାଥ । ଆସିବେ ତୋ ସେ ବଂଶୀପାଣି ଏକ୍ଷଣି । ରସେ ମାତ୍ତ ସାର୍ଥ କର ତୋ ମନୋରଥ । ୪ । ୨୫ ।

ସ୍ରଗ୍‌ଧରା ବୃତ୍ତ ।

କେ ବା ରେବାନ୍ଦ ତୀର୍ଥେ ତପ କର ଜପରେ ତୋଷିବାରେ ଶିବାରେ ।
ଯେବା ତା କାମ ପୂର୍ଣ୍ଣେ ରଖିଅଛି ସନ୍ଧି ଗୋ ଭାବ ଦାବାଦରଙ୍ଗେ ।
ସଂକଳ୍ପେ କଳ୍ପନାକୁ ଦୂରାନର ମଣି ସେ ଧୃଷ୍ଟ ସଂଜଳ୍ପନାକୁ ।
କଳ୍ପ ପ୍ରାପ୍ତ ଷଣ୍ଡାର୍ଦ୍ଧେ ବରବରୁ ନ ସରେ ତଳ୍ପରେ ନାଳ୍ପଦୁଃଖେ ।୨୬

ରାଗ ବରାଡ଼ି । ଅଡ଼ତାଳ ।

କି କରିବ କହ ଗୋ । ସଜନ ଏବେ । ପଦ ।

କି କହିବ କହ ଏବେ । ନ କଲେ କରୁଣା ଯେବେ । ଅଟକେ ରହିଲେ କି ଗୋ । ସେ କେଉଁ ରମଣୀଭାବେ । ୧ ।

ସକଳ ବିଷୟ ତେଜ । ଅକପଟେ ଥିଲି ଭଜ । ମୁଁ କର ନାହିଁ ତ ଦୋଷ ନକର କହୁଚ ଆଜ । ୨ ।

କଳପ ସୁକୃତ । ପଦତଳରେ ରହିବ ଆସି । ଜଳପିଲେ ପଦେ ସେହି । ତଳପ ଉପରେ ବସି । ୩ ।

ମଦନଶରରେ କେତେ । କଦନ ମତେ ସେ ଦେଲେ । ସଦନେ କାହାର ରହି । ବଦନ ନ ଦେଖାଇଲେ । ୪ ।

କବି ସୁଧାନିଧି ଭଣି । ଏ ବିରସ ବାଣୀ ଶୁଣି । ଅବଳମ୍ବେ ଦୂତୀ ବୋଲେ । ସିଦ୍ଧ ମୁଁ ତାହାଙ୍କୁ ଆଣି । ୫ । ୨୬ ।

ଗଦ୍ୟ

ପଞ୍ଚାନନ ଚରପଞ୍ଚାନନ ପରତାପ-ସଞ୍ଚାରଣେ ପାଂଶୁଗାଞ୍ଚ ପାଞ୍ଚ ମାରିବାରେ । ବଞ୍ଚକ ବଞ୍ଚକରେ । ବଞ୍ଚାଇବାକୁ ନ ଥିବାରେ । ସଞ୍ଚିତ ପ୍ରୀତି ବିଚ୍ଛେଦରେ । କୁଞ୍ଚିତ କେଶୀ ବିପଞ୍ଚି । ସ୍ୱାତିମ କଞ୍ଚିତ ଥିର ନୋହି । ଧଞ୍ଚାଳନ ସହି ନିଶ୍ୱାସ ମୁଞ୍ଚି ମୁଞ୍ଚି । ଜଗଦାନନ୍ଦ-କୁନ୍ଦେନ୍ଦୁକିରଣତାପରୁ । ମନ୍ଦ-ଗନ୍ଧ-ଶୀତ-ମରୁତ ଚନ୍ଦନ ବର୍ଣ୍ଣ ବହିବାରୁ । କୁନ୍ଦ ମନ୍ଦାର ବନ୍ଧୂକାରବିନ୍ଦ ମକରନ୍ଦ ସନ୍ଦୋହ ପ ନୁ ମିଳିନ୍ଦ-ବୃନ୍ଦ ବୃନ୍ଦ ମନ୍ଦ-ମନ୍ଦ-ସଙ୍ଗୀତ ଗାନରୁ । ମନ୍ଦ-ପାଳିତ ମନ୍ଦ୍ରତରୁ ଚନ୍ଦ୍ରକାନ୍ତରୁ । ସ୍ୱାନ୍ତ ।ଥିରୁ । ମଦନ ଧ୍ୱମକର ମଧୁକର ପିକ-ନିକର ପବନେ । ଶ୍ରୀମତୀ କଥିତ ବାଣୀ ଦୁଃଖିତ ମନେ । ୮ ।

ମାଳମା ବୃତ୍ତ ।

ଅତନୁ ତନୁ ନ ଥାଇ ଘନକୁ କ୍ଷୀଣ ବିଧୁ ।
ତନୁ ଥିଲେ ନ ରଖନ୍ତୁ ଘନମାନଙ୍କୁ ଲୋକେ ।
ହରନୟନ ସକାଶୁଂ ଶେଷ ଯା ନୋହିଲୁ ତୁ ।
ବିରହିଣୀରେ କପାଇଁ ନୋହିଲୁ ଦୁଃଖ ଦାତା । ୨୬ ।

(ପୁଣି)—ମଦନ କୁସୁମକାଣ୍ଡେ ମାର ନା ଥାଅ ଦଣ୍ଡେ ।

ସଦସ୍ତୁ ମତ ହରଙ୍କ ପାଦରେ ମାନ ଶାନ୍ତ ।
ବଦନ କମଳ ମଧ୍ୟେ ମୋଦରେ ଚୁମ୍ବ ଦେବ ।
କଦନ ଦେଇ ତ ପଶ୍ଚାଦ୍ଘାତରେ ବାଣ ଛନ୍ଦ । ୨୮ ।

ପୃଥ୍ୱୀ ବୃତ୍ତଂ ।

ମନୋଜ ମନୁସମ୍ଭବା ମନକୁ ମନ୍ଥିବା କୋପରେ ।
ସଦାଶିବ ସଦାଶିବପ୍ରକର ବାଞ୍ଛିଲେ ନେତ୍ରରେ ।
ତଥାପି ତନୁ ହୀନରେ ରକ୍ଷି ତୁ ଭୂତଭାବେ ସତେ ।
ଅନଙ୍ଗ ବିଷମାଶୁଗେ ପୁଣି ସ୍ୱ ଭେଦୁ ମୋ ମର୍ମକୁ ।

ରାଗ ଶ୍ରୀ । ଏକତାଳି ।

କଦନ ଦେଇ ତୁ କେତେ ରେ ମଦନ ମୋତେ । ପଦ ।

ସଦନ ହେଲାଣି ବନ । ବଦନ ଦେଖି ମ୍ଲାନ । ରଦନ ଛଡ଼ିଲୁ ବାଣ । ଛେଦନ କରୁ ନିରନ୍ତେ । ୧ ।

ବିଷମ-ବିଶିଖ ବାର । ବିଷମ ବିଶିଖବାର ।
ଅସମୟରେ ମୋହର । ଚାପ ନ ଧର ତୁ ଚିତ୍ତେ । ୨ ।

ଛୋଡ଼ର ଅଟଇ ପର । ଯେ ହର ତାକୁ ପ୍ରହାର । ମୋହର ଠାରେ ସତ୍ୱର । ଫହର କୋପ କାହିଁତେ । ୩ ।

ନକର କତ୍ସିତ ବାଣୀ । ନକର ମୋହର ଶୁଣି । ମକରଧ୍ୱଜ ତୁ ପୁଣି । ନ କର କ୍ରୋଧ ଯନ୍ତ୍ରେ । ୪ ।

ସବୁକାଳେ ଏହି ପଣ । ସନ୍ତୋଷ କହୁଁ କିଶୋରୀ । କବିସୁଧାନିଧି ଭଣି । କର ସ୍ମରଣ ନିରନ୍ତେ । ୫ । ୨୭ ।

ଚନ୍ଦ୍ରନନ୍ଦା । ପୃଥ୍ୱୀ ବୃତ୍ତ ।

ହିମାଂଶୁ ତୁ ହିମାଂଶୁରେ ଦହ୍ନ ରମାର ଯେ ବାସକୁ ।
ଅମାର୍ଗ ଗୁରୁଶାପରେ ନ ରହିଲ ସମାନେ ବପୁ ।
ଜମା ନୋହୁ ତୁ ସେ ବଶେ ସତ ସୁମାର୍ଗ ଦେବାଦରେ ।
କ୍ଷମା କହିର ଯା ତତେ ଗଜତମୋତ୍ତମା ଜାରତୁ । ୩୦ ।

ମନ୍ଦାକ୍ରାନ୍ତା ବୃତ୍ତ ।

ଦୋଷା ଯୋଷାବର ବହିବସା ନାଶିବାରେ ତୁସାରେ
ରୋଷାବେଶେ ବହିଚ ବ ସତେ ବନ୍ଦଏ ସେ ମଧାରେ ।
ଆଶା କାସାବଶୁ ଶଶୀ ଶଶା ନାଶ ହେଲ ତୃଷାରେ ।
କ୍ଳେଶାଚ୍ୟନ୍ତେ ବହ୍ନି ନୁହ ମନ୍ତେ ତୁ କଳଙ୍କୀ ରସାରେ ।୩୧।

ସ୍ରଗ୍‌ଧରା ବୃତ୍ତ ।

ଆର୍ଯ୍ୟା ମର୍ଯ୍ୟାଦଭଙ୍ଗେ ବଟପିକୁଳ-ଗଡ଼ା ଗୂଢ଼ମାର୍ଗ ପ୍ରକାଶେ ।
ତୋଷା ଯୋଷାଙ୍ଗସଙ୍ଗେ କମଳଜ କମଳା-ବାସ ନାଶପ୍ରଭାବେ ।
ଚନ୍ଦ କ୍ରୀଡ଼ା ବିଭନ୍ନେ ବରହିଣୀ ବିମୁଦେ ଏଣଶାବା ପଦାରେ ।
ଏତେ ଦୋଷେ ପ୍ରକାଶେ କୁମୁଦନ ରସିକାକାନ୍ତତୁ ଲାଞ୍ଛନାଙ୍ଗେ ।୩୨।

ରାଗ ଆହାରି । ଆଡ଼ତାଳି ।

ବଧୂ ରେ । ବଢ଼ ବାଧୁରେ । ବରବଣୀ ରେ । ପଦ ।
ମଧୁର ହାସକୁ ମୋହନର ଧାଇ । ଅଧୁନା ପାଉଛ ।
ଅନୁତାପ ମୁହିଁ । ୧ ।

ଆଶା ହରଣର । ହର ତୁ କଳଙ୍କୀ । ନାଶିଲେ ତୁ ମତେ ।
ଦୋଷୀ ନୋହିବୁ କ । ୨ ।

ଶୀତକର ତୋର । ଫସାରେ ପ୍ରଖର । ହୃତକର ମୋହ୍ନ । ହେଲୁ ବାଧାକର । ୩ ।

ବଡ଼ବାନଳ ର । ଭ୍ରାତ ତୁ ମକର । ପୀଡ଼ବୁ ନାହିଁ କ ବିଷଧର ଧର । ୪ ।

କବି ନିଶାନାଥ । କହେ ଗ୍ରଥିତ, ଅବିରତ ଗାଥା । ହରିଙ୍କ ଚରିତ । ୫ । ୨୮ ।

ରାଗ—ବେଲାଭୋର, ଏକତାଲି

ସୁଧାକର ତୁ କରଚେ । ବାଧା ଦେଉଅଛୁ କେତେ । ସାଧାରଣ ମାର୍ଗେ ରହି । ଉଦ୍ଧାର କର ସନ୍ତତେ । ୧ ।

ଉଦସ୍ତ ହେଲେ ତୋହର । ମୋଦ ହୁଅଇ ଲୋକର । ହୃଦସ୍ତ ଭିତରେ ମୋର । କଦନ ଦେଉ ମାତର । ୨ ।

କାମ ସଖା ତୁ ହେବାରେ । ବାମ ହେଉ ବାରେ ବାରେ । ହିମ-ଗୁଣ ଛାଡ଼ି ଏବେ । ଝାମ ଦେଉ ନିରନ୍ତରେ । ୩ ।

କବି ସୁଧାନିଧି ଭଣି । କୃଷ୍ଣପାଦ-ଯୁଗ ଗୁଣି । ଅବଲମ୍ବେ ରାଧା ପାଣି । ଆର୍ତ୍ତେ ଭୃଙ୍ଗେ କହି ବାଣୀ । ୪ । ୨୯ ।

ଭ୍ରମର ନିନ୍ଦା । ମନ୍ଦାକ୍ରାନ୍ତା ବୃତ୍ତ ।

ମଧୁକର ରହ ଦୁରରେ ଦୁରରେ ।
ରବ ନ କର ତୁ ପାଶରେ ପାଶରେ ।
ସୁମନ ସରସ ପାନରେ ମତ୍ତରେ ।
ଅବିରତ ବସ କାନନେ ମୋଦରେ । ୩ ।

ବସନ୍ତତିଳକା ବୃତ୍ତ ।

କୁନ୍ଦାର ବନ୍ଦ କରବୀର ସୁବନ୍ଧୁକାନ୍ଦ ।
ମନ୍ଦାର ଜାତି ନବ-ମାଳିକ ଯୂଥ ମଲ୍ଲୀ ।

ମାକନ୍ଦ-ବୃନ୍ଦ-ମକରନ୍ଦ ମିଳନ୍ଦ ତେଜ ।
ସନ୍ଦେହ୍ଵଂ ନୋହ୍ଵ କୁଞ୍ଜେ ମିତ୍ର ମନ୍ଦମନ୍ଦେ । ୩୪ ।

ମାଳମ୍ମା ବୃତ୍ତ ।

କୁସୁମ ସମସ୍ତ ଭ୍ରମେ ଫେରୁ ତୁ ବେଗବେଗେ ।
କୁସୁମ ସମସ୍ତ ଜାଣି ଚୁମ୍ବ ଦେଇ ସରାଗେ ।
ମୁଣି ତୁ ମଧୁପ ନାମେ ଖ୍ୟାତ ହୋଇଚୁ ଲୋକେ ।
ବଳ ନ ବହିବୁ କମ୍ପା ଦୁଃଖ ବାହୁଲ୍ୟ ମତ୍ତେ । ୩୫ ।

ରାଗ କାମୋଦ, ତାଳ ଆଦ ।

ଅଳି ପରମ ସୁଖରେ । ନଳିନ କର୍ଣ୍ଣିକାସାରେ । ମିଳି ମନ ଆନନ୍ଦରେ । କେଳି କର ଅଭ୍ୟନ୍ତରେ । ୧ ।

କେତେ କରୁଚୁ ଝଙ୍କାର । ମତେ କର ଅହଙ୍କାର । ଏତେ ସବୁ ହେଲେ ଚୋର । ତତ୍ତ୍ୱେ କଣ୍ଟା ନୋହେ ଥିର । ୨ ।

ମାନବତୀଙ୍କର ଚିତ୍ତ । ଗାନରେ କରୁ ବ୍ୟଥିତ । ଅନବରତରେ ଧୂର୍ତ୍ତି । ତୁ ନ କର ସନ୍ତାପିତ । ୩ ।

କହେ କବନଗାନାଥ, ଗୁଣ ଶ୍ରୀକୃଷ୍ଣ ଚରିତ । ରହେ ଶ୍ରୀକଣୋସ୍ତ ପୁଣି । ହୋଷେ କହେ ଏ ଭାଷିତ । ୪ । ୩୦ ।

କୋକିଳ ନିନ୍ଦା । ରଥୋଦ୍ଧତା ବୃତ୍ତ ।

କାନନ ପ୍ରିୟ ତୁ କାନନେ ରହ୍ଵ ।
ଗାନରେ ଦ୍ରବ କରାଇ ରସାଳକୁ ।
ପାନରେ ରସ ତୁ ଚିତ୍ତ ତୋଷରେ ।
ମାନଦେ ନକରୁ ତୋ ରବ ବ୍ୟଥା । ୩୬ ।

କାନନ ପ୍ରିୟ ନାମ ତୋ ସଦା । କାନନେ ପ୍ରିୟ ଭାଷ କୁହାଇବୁ ।
କାକରକ୍ଷ ପିକ ତୁଚ୍ଛ ନାମରୁ । କା କରେ ନ ପଞ୍ଚମୀତ ଭାବରୁ ।୩୭।

ରାଗ ପୁନ୍ନାଗ, ଏକତାଳି ।

ମନ୍ଦ ପାଳ । ପିକ ମନ୍ଦ କାଳ । ଆରେ ଆରେ । ପଦ ।

କଳକଣ୍ଠ ନାମ ଚୋର । କଳପିତ ବେଦବର । କାଳକଣ୍ଠ ହେବା ବର୍ଣ୍ଣୁଁ । କାଳ ତୁ ସ୍ୱରସ୍ୱଣୀ ର । ୧ ।

ପରଭୃତ ନାମ ବହୁ । ପରକୁ ସନ୍ତାପ ଦିଅ ପରମ ବିବେକ ଜନେ । ପରଶଂସା ହେବୁ କାହୁଁ । ୨ ।

ଚିର ପ୍ରୀତିକ ହଜାଇ । ‘ପରରେ ମାଡ଼ୁଚି ଯେ ତୁହି । ତାର ମନ ମୋହିବାକୁ । ତୁ ରବ କର ସେଠାଇ । ୩ ।

କବି ସୁଧାନିଧି ଭଣି । କବୋଷ୍ଣ ବଚନ ଗୁଣି । ସବୁକଳ ମନ ହୋଇ । ଶ୍ରୀମନ୍ତ କହନ୍ତି ପୁଣି । ୪ । ୩୧ ।

ପବନ ନିନ୍ଦା, ପୃଥ୍ୱୀ ବୃତ୍ତ ।

ସଦାଗତି ସଦା ଗତି ନ କର ଯାଅରେ ଦୂରରେ ।
ତୁ ମନ୍ଦପଣେ ଗୁଡ଼ରେ ନ ବଢ଼ ମନ୍ଦ ମନ୍ଦେ ସତେ ।
ଜଗଜ୍ଜନ ପରାଣ ତୁ ନ କର ପ୍ରାଣପୀଡ଼ା ମତେ ।
ଦୂରନ୍ତେ କମ୍ପୁ ନୋହିବୁ ବଳବୁ ଯା ଭୁଜଙ୍ଗାଶନୁ । ୩୯ ।

ରଥୋଦ୍ଧତା ବୃତ୍ତ ।

ମନ୍ଦ ଶୈତ୍ୟ ଗୁଣ ବ୍ରାତ ତୋ ଥିଲ୍ ।
ମନ୍ଦ ସଙ୍ଗ ବଶୁ ବାତ ତା ଗଲ୍ ।
ଗନ୍ଧସାର ନଗ-ସର୍ପ ତୁଣ୍ଡରୁ ।
ଗୁଣ୍ଡରେ ବଳ ତୁ ତାପ ସଞ୍ଚରୁ । ୪୦ ।

ଶିଖରିଣୀ ବୃତ୍ତ ।

ଜଗତ୍‌ପ୍ରାଣ ପ୍ରେତ ପ୍ରଭୁ ଦିଗୁ ବହୁ ମନ୍ଦଗୁଣରେ ।
ନ ଦେଇ ସନ୍ତାପ କ୍ଷଣକ ସିବୁକ ମୋ ନିକଟରୁ ।
ନବାମ୍ଭୋଦଶ୍ୟାମ ପ୍ରଭୁକସଦ୍ମ ମୋ ସଙ୍ଗମ ବିହି ।
ତହୁଁ ସ୍ୱଚ୍ଛନ୍ଦ ପଙ୍କେ ବିକଳ କର ରେ ତୋ ନିଜ ଗୁଣେ । ୪୧ ।

ରାଗ ଆହାରି । ଆଡ଼ତାଳ ।

ସମୀରଣ ଶୁଣ ବାରେ ରେ । ଏବେ ବାମ ନୁହ ମୋ ଠାରେ ରେ । ପଦ ।

ଦୈତ୍ୟନାମ ଯେବେ । ସତ୍ୟ ବଦ୍ଧ ତେବେ । ଦିତ୍ୟାର କ ବାମକର ମନଭାବେ । ୧ ।

ଜଗତପ୍ରାଣ ତୁ ଜଗତେ ପ୍ରମାଣ । ଅଗତ ନ କର ଦୁଃଖିନୀ କ ପୁଣ । ୨।

ଅବଳାରେ କପାଁ ତୁ ବଳୀ ହୋଇବୁ । କବଳୁ ବଳରୁ ଭୁଜଙ୍ଗରୁ ଠାବୁ । ୩ ।

କହେ ରଘୁନାଥ କବ ନିଶାନାଥ । ରହେ ଶ୍ରୀ କଣୋରୀ କହିବା ଉଚିତ । ୪ ।

ସଖୀଙ୍କ ପ୍ରତି ଶ୍ରୀରାଧା । ମାଳଶ୍ରୀ ।

ରଜନୀ ଚରମଭାଗେ ଆସିଲେ ନାହିଁ ଯେବେ ।
ସଜନି ତୁ କସ ବାରେ ଚିତ୍ତରେ ଚିନ୍ତ ବାରେ ।
ରଜନୀକର ସ୍ବଭାବେ ମେ।ହିଲା ତାଙ୍କୁ ଯେବେ ।
ସଜବନଜ ସୁନେତ୍ରୀ ଧନ୍ୟ ତା ପ୍ରୀତି ରୀତି । ୪୬ ।

ରାଗ ରେଗୁପ୍ତ । ଆ:ଦଚାଳ ।

ଏ ନିଶି । କ କଲେ କାନ୍ତ ନ ଆସି ବିଷମଦଶାରେ । ଲୋକ ହସାରେ । ବସିଲି ବସାରେ ସଡ଼ଗଲ ମୁଁ ଆସି । କହିଲେ ସେ ଯେତେ । ଦେନ ତାହା ଚିତ୍ତେ । କଣଥିଲ ସତ ପ୍ରତେ ଗୋ । ଏବେ ତାଙ୍କ ଚିତ୍ତେ । ନ ରହିଲି ସତ କପାଁ କଲେ ଏତେ । ସଇ ଗୋ ପ୍ରାଣମିତେ । ୧ ।

ଆସିବେ ଅବଶ୍ୟ ବୋଲ ପ୍ରାଣଈଶ । ଗୃହେଁ ଥିଲି ଦଶଦଶ ଗୋ । ସେ ମୋହର ଦୋଷ । ନ ଦେଖି ନିରାଶ । କଲେ ତ ସେ ରାସରସିକ ଏହା କସ ! ୨ ।

ସେ ଯେଉଁ ଅନାଥା କରିଦେଲେ ନାଥ । ଗୃହସ୍ଥ ପୁରୁଷାର୍ଥ ବ୍ୟର୍ଥ ଗୋ । ଆଜ ମନୋରଥା ନୋହିବ କି ସାର୍ଥକ ହେ ରଘୁନାଥ । ଆସିନବେ ଏବେ ନାଥ । ୩ ।

ରେଗୁପ୍ତ । ଆଡ଼ତାଳ ।

ସହି କେକି, ମୋହିଲକି, ପ୍ରାଣନାଥଙ୍କୁ । ପଦ ।

ମୋହିଲକି, କହିଲକି, ଚହିଲେକି, କାହିଁକି କି, ବହି ସେକି । ୧ ।

କାମନାରେ କା ମନାରେ, ବାମ ହେଲେ ଶ୍ୟାମ ଭଲେ, ପ୍ରେମ କଲେ । ୨ ।

ଅନ ଦେଲେ, ଆନ କଲେ, ଭିନ୍ନ ହେଲେ, ସେ ନଇଲେ, ଧନ ନେଲେ । ୩ ।

ରାଧାକୃଷ୍ଣ, ରାଧାକୃଷ୍ଣ ସୁଧାନରେ ସୁଧା ନରେ, ବାଧାହରେ । ୪ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ନଶ୍ଚେ ଆସିବବୋଲି ଘୋଷି କପଟେ କୁଞ୍ଜେ ଜଗାଇ ମୋତେ ।
କାହିଁ ସ୍ନେହ ବସେ ଅଶେଷ ଉପରେ ସେ ମଜ୍ଜିଲେ ତୋଷରେ ।
ଗୃହ ଶ୍ୟାମ ସୁଧାନଧି ପ୍ରିୟୁବଶେ ଯା ନୋହିଲେ ମୋ ରସେ ।
ବ୍ୟର୍ଥେ କାନନ ମାଳତୀ ପରି ସତେ ଏ ଶର୍ବରୀ ଯାଉଛି । ୪୩ ।

ରାଗ ମୁଖାରୀ । ଆଡ଼ତାଳ ।

ଏଣିକି ମୁଁ ଜାଣିଲି । ତାର ବଚେକ ଏତିକି ବୋଲି ଚହିଲି । ଆଜି ନକୁଞ୍ଜକୁ ଆସିବ ବୋଲି ସେ । ଏଣିକି ନ ଆସି ରହିଲେ କା ରସେ । ପଦ ।

ସତ ବୋଲି ହେଲି ତା ଭରସା । ସହି ରହିଲି ଏ ଦୁଃଖକୁ ନଶା । ବ୍ରତ ଚେଷ୍ଟା କଲେ ଏ ଲୋକ ହସା । ହେଲି ଏତେପରି କରି ମୁଁ ଆଶା । ୧ ।

ମଧୁ ନଶି ଆସି ପାଇଚ । ବଧୂ-କରଣ ଅଧିକେ ବାଢ଼ିଚ ।
ମଧୁକର-ରବ ଧୃତ ନେଉଚ । ମାନ ତା ଭଷାକୁ ଯାହା ହେଉଚ ।୨।
କବ ସୁଧାନଧି ଏ ବାଣୀ । କହଇ ଶୁଣ ଗୋ ସୁବାଣୀ ।
ନ ବସୁର ଝଡ଼େ ମୁରଳୀ-ପାଣି । ନାଗର ଆସିବେ ସମସ୍ତ ଜାଣି ।୩।

ବଂଶସ୍ଥ ବୃତ୍ତ ।

ନଶାବସାନେ ତ ପ୍ରିୟଂବଲେକନେ ।
ମୁରାର ନୋଶୁଗ ବାଣ ଭେଦନେ ।
କୁଞ୍ଜାଳୟ ପ୍ରାଙ୍ଗଣ ହେଉ ସଭୁରେ ।
ସକୌତୁକେ ଭାଷିତ ସଖି ରାଧିକା ।

ରାଗ ବଙ୍ଗାଗ । ଆଡ଼ତାଳ ।

ଏଥିପର । ସ୍ନେହ କର । ଥିଲେ ଦୁଃଖ କ ରହିବ ଗୋ । ପଦ ।
ଜଗି ବସିଥିବ ଯାହାପାଇଁ । ରଜମା ଗଲା ଉଚାରୁ ପାଇ
ସେଜ୍ଣ ଆସି ହସି ଯେବେ ବଚନ କହିବ ଗୋ । ୧ ।
ଅନେକ ଯତ୍ନେ ଲୋଡ଼ାଇ ପୁଣି । ପକ୍ୱ ତାମ୍ବୂଳ କୁସୁମ ଆଣି ।
ରଖି ରଖି, ଗଲେ ସୁଖି । ତାହାଙ୍କ ସୁଖ ନୋହିବ ଗୋ । ୨ ।
ଆଜ ଜଣକର ଧାଇଁଗଲେ । ଏକାନ୍ତରେ ବସି ଭାଳୁଥିଲେ ।
ଜାଣି ଜାଣି, ଶୁଣି ଶୁଣି । ତାହା ଦେହ କ ସହିବ ଗୋ । ୩ ।
ରଘୁନାଥ କବନଶାନାଥ । କହଇ ସକଳ ମନୋରଥ ।
ପୂର୍ଣ୍ଣ ହେବା ପାଇଁ ଦବାନଶି ପଥ କେ ଚାହିବ ଗୋ । ୪ । ୩୬ ।

## ଶ୍ରୀକୃଷ୍ଣ ପ୍ରତ ରାଧା ।

ରାଗ ଲଳିତ । ଏକତାଳ ।

ଏତେ ବେଳକୁ । ଏତେ ବେଳକୁ ମୁଖ ଦଶିଲ ଆଜ ।
ପଥ ବଣା ହୋଇଲେ କ ବ୍ରଜ-ଯୁବରାଜ । ପଦ ।

ପର ଦ୍ୱାର ଚର ପ୍ରୀତି । ଆନ ରମଣୀରେ ମାତି । ମୋ ପାଶକୁ ଆସିବାକୁ ପାଇଲ କି ଲଜ । ୧ ।

ଯା ଭୁଲେ ମାତିଲ ଦିଶା । ସେବା କେମନ୍ତ ସୁରସା । ବୁଝିବାକୁ ଉଲଗ୍ଧିଥିଲେ ମୋ ସଖି-ସମାଜ । ୨ ।

ମିଳିବାରୁ ଓଷ୍ଠ ସୁଧା । ଜବାରୁ ଅନଙ୍ଗ ବାଧା । ତେବୁ କୁ ଏବେ ଶ୍ରୀଅଙ୍ଗ ଦର୍ଶେ, ଭିନ୍ନ ତେଜ । ୩ ।

ତୁମ୍ଭେ ଆସିବା ସମୟ । ଜାଣି ହୋଇ ତୋଷମୟ । ଜଗି ବସିଥିଲି କୁଞ୍ଜେ ସାଜ ଫୁଲ ଶେଜ । ୪ ।

ଶୁଣି ରାଧା ଭଙ୍ଗି-ଗିର । ମଥା ପୋତିଲେ କିଶୋର । ଭାବ କହେ ରଘୁନାଥ କବିଦ୍ୱିଜରାଜ । ୫ । ୩୭ ।

ରଥୋଦ୍ଧତା ବୃତ୍ତ ।

ଏପରି ସପରିହାସ ଭାଷକୁ ।
ଭାଷିଲେ ତ ବୃଷଭାନୁ-ନନ୍ଦନୀ ।
ନନ୍ଦସୂନୁ ଚନ୍ଦ୍ର ଯା ତ ପାଶକୁ ।
ବୋଇଲେ ଅଟକ ଏ ବଶାଶିକା । ୪୫ ।

ପୃଥ୍ୱୀ ବୃତ୍ତ ।

ନ ଯାଅ ଧନ ପାଶରେ ନବକିଶୋର ଜାରଗଣୀ ।
ସୁଜାଣ ନୁହ ପ୍ରୀତିରେ ସବୁକଥା ବୃଥା ଜାଣିଲି ।
ମଜାଇ କହିଲ ପରା ମଣିତ କ ପଠିତ ଚିତ୍ତରେ ।
·ସୁଜାଣ ଚଣ ହୃଷ୍ଟ ହେ ନଳାବ ନାହିଁ ତା ଏଣିକ । ୪୬ ।

ରାଗ ଦଣ୍ଡାରବା । ଆଡ଼ତାଳ ।

ରାଧା ପୁରତକୁ ଯା ନା । ଶଠ ଲମ୍ପଟ କା,ନା । ଜାଗର କରି ସେ, ନବୀନ କିଶୋରୀ । ଲୋଭିଲ କେତେ ଯାଚନା । ୧ ।

କେଉଁ ଯୁବତୀ । ସଙ୍ଗରେ ନଶି ମାତି । ପୂରିଲ ମନ କାମନା ।୨।

ପ୍ରିୟ ସଖିକ । ପାଇବୁ ଆଉ ନାକ । ମଦନ କରନ୍ତୁ ଖବନା ।୩।
ଯେଣ ମୋ ବାଣୀ । ଏଠାରୁ ବେନୁପାଣି । ଚଳ କଳହ ଲଗାନା ।୪
ଖାର ପ୍ରତାପ । ଶଙ୍କର ଦେବ ଭୂପ । ଭାଷେ ଉଗାର ହସନା । ୫।

## ଲଳିତାଙ୍କ ପ୍ରତି ବିଶାଖା ।

ଇନ୍ଦ୍ରବଜ୍ରା । ବୃତ୍ତ ।

ହେ ପ୍ରାଣତୁଲ୍ୟେ ଲଳନ୍ତେ ତୁ ଜାଣେ ।
ଏ ପ୍ରାପୃ ପ୍ରୀତି କରନ୍ତନ୍ତି କେ ବା ।
ଯେ ପ୍ରାପୃ ସେ ଖିଷି ନ ଆସି ଗୁହେ ।
ସେ ପ୍ରାନ୍ତୁ ଆସି ପ୍ରିୟୃଭାଷ ଭାଷେ । ୪୭ ।

ରାଗ ଧନାଶ୍ରୀ । ଏକତାଳି ।

ସଙ୍ଖି ସେ ପ୍ରୀତିରେ ସତେ କ ଲାଭ ଗୋ । ଶଏ କଥାରେ ସନ୍ତ ଯା ନ ଥିବ । ପଦ ।

ନିତି ଆନ ଦେଇ ଦେଇ । ନକର ବୋଲି ଏ କହ୍ନି, ତେତିକ ବେଳରେ ଯେବେ, ତା ପାସୋର ଦେବ । ୧ ।

ସରାଗ ଥିବ ବାହାରେ । ନିରାଶ ଥିବ ଭିତରେ । ପରାଣ ଦେଲେ ତାକୁ । ଫଳ କ ମିଳିବ । ୨ ।

ହିତ ବୋଲି ଭଜିଥିଲେ । କିତବ ପଣ ସେ କଲେ । ଲିତାଏ ହେଲେ ତାଠାରେ । ଲୋଭ କ ବଳିବ । ୩ ।

କହେ ରସେ ରଘୁନାଥ କବି କୁମୁଦମୀନାଥ । ସ୍ନେହେ ମିଶିଥିଲେ ମନ ଛୁଡ଼ କେ ପାରିବ । ୪ ।

## ବିଶାଖାଙ୍କ ପ୍ରତି ଶ୍ରୀକୃଷ୍ଣ ।

ଶିଖରିଣୀ ବୃତ୍ତ ।

ବିଶାଖେ ଏବାଣୀ ବିତର କର ଗୋ କାହିଁକି ସତେ ।
ବିଟଖୋରେ ଶ୍ରଦ୍ଧା ବହିତ କରିବା ଉତ୍ତମ କଥା ।

ନଶାରେ ଆଶାରେ ନମଜ ଭମିଲ କୁଞ୍ଜଗହ୍ୱରେ ।
ମିସାରେ ଯୋଷାରେ ମିଳିବ ସବୁ ସମ୍ପତ୍ତପଦ ମତେ ।

ରାଗ ଧନାଶ୍ରୀ । ଏକତାଳି ।

ଏତେ ବିମୁଖ ମୋଠାରେ କାହିଁପାଇଁ ଗୋ । ତେତେ ଅପରାଧୀ
ମୁହିଁ ହୋଇ ନାହିଁ ଗୋ । ପଦ ।

କଂକେଳି-କୁଞ୍ଜରେ ବୋଲି, କହିଥିଲ କୁନ୍ଦବଲ୍ଲୀ । ଯେତେକ
କଥା ମନେ ରହିଲ ନାହିଁ ଗୋ । ୧ ।

ବକୁଳକୁ ଜବା ବୋଲି । ବଞ୍ଜୁଳ-କୁଞ୍ଜକୁ ଗଲି । ସୁକୁମାରୀକ
ଲୋଡ଼ିଲି । କେତେ ଠାଇଁ ଗୋ । ୨ ।

ଲବଙ୍ଗଚ୍ଛାନନ୍ଦଦା କୁଞ୍ଜେ । ଲୋଡ଼ି ଲୋଡ଼ି ଗଲି ମୁଁ ଯେ ।
ଅଳୀକ ଲୁହଇ ସବୁ ସତ ଏହି ଗୋ । ୩ ।

କହେ ରସେ ରଘୁନାଥ । କବିକୁମୁଦନାଥ । ରହେ
କାହାର ଆୟତ୍ତ ହେଲେ ସ୍ନେହି ଗୋ । ୪ । ୪୦ ।

ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧା

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଓଷ୍ଠେ କଜ୍ଜ୍ୱଳ ଭାଲ ସିନ୍ଦୂର ଶଟା ଲକ୍ଷା ସୁବକ୍ଷାନ୍ତରେ ।
ପାର୍ଶ୍ୱେ କଙ୍କଣ ଚିହ୍ନ ଗଣ୍ଡଯୁଗଳେ ତାମ୍ବୂଳ ମୁଦ୍ରାଧରେ ।
କେ ବା ସାଜିଛି ଏ ସୁବେଶ ଯତନେ ଧନ୍ୟା ଟି ସେ ସୁନ୍ଦରୀ ।
ଭାଗ୍ୟେ ଗୃହିଁଲି ମାଲବାସଛବି ମୁଁ ରାସେ ରହି ଜାଗରେ ।୦୯

ରାଗ ପରଜ ଆଡ଼ତାଳି ।

ଆନେ ପର ନ କର ପ୍ରୀତି । କହ ଯେ ନତି । ପଦ ।
ଏହି ଦେହେ ଦେଇ କର । କେତେ ଯେ ନପ୍ରମ କର ।
ଲଲାଟେ କାହା ସିନ୍ଦୂର । ଦେଖ ତ ଥିବେ ମୁକୁର । ୧ ।

ତୁମ୍ଭେ ତ ବଞ୍ଚକ ନୁହ । ଜାଣ କେତେ ପର ସ୍ନେହ ।
ଅଙ୍ଗେ ଯା ଯାବକ ବହ । ଦେଖି ସନ୍ଦେହ କାହା ଦେହ । ୨ ।
ସେ ସୁନ୍ଦରୀ ଅଳଙ୍କାର । ପ୍ରଶ୍ନ ଦଣ୍ଡକେ ଭୁମ୍ଭର ।
ମଣ୍ଡନ କରଜ ଧାର । ହେଲେ କେମନ୍ତ ସୁନ୍ଦର । ୩ ।
ତା ଗୃହୁ ନେତ୍ର ଅଞ୍ଜନ । ଅଧରେ କର ରଞ୍ଜନ ।
ପିନ୍ଧିଚ କାହା ବସନ । ଭଲ କର ଥରେ ଚିହ୍ନ । ୪ ।
ଘେନ ରାମକୃଷ୍ଣ ଗିର ପ୍ରୀତିକି ମୋର କଂହାର ।
କହୁଚ ମୁଁ ଯୋଡ଼ି କର । ମୋ ପର ତାକୁ ନକର । ଆ । ୫ । ୪୧

## ଶିଖରଣୀ

ପରାଣେକ ପ୍ରାପ୍ତେ ଦୁଇତନୁ ସଦା ଭାବ ସଦନେ ।
ମୂନ୍ଦେ ପ୍ରେମା ଭେଦେ ମିଶରଦ ଥିବା ସନ୍ତତ ସୁଖେ ।
ତବାଙ୍ଗେ ସେ ରାମା ନଖରଦପଦେ ବାଧଇ ମତେ ।
ମୁଁ ସେ ହନ୍ତ ସ୍ୱାନ୍ତେ ପରାଣ କଳା ତା ସମ୍ମତ ମନେ । ୫୦

ରାଗ ଯଦୁକୁଳ କାମ୍ବୋଜ ।

ତାଳ ଆଦି ।

ଦୁଇ ଦେହ ଏକ ପ୍ରାଣ ବୋଲିବା କଥା ।
ମୁହିଁ ହେଜାଳା ଏବେଣ । ସେହି ନୁହଇ ଅନ୍ୟଥା । ୧ ।
କରଜକ୍ଷତ ତୁମ୍ଭର । ଉପରେ ଦେଖି ସତ୍ୱର ।
ମୋର ଶରୀର ହେଉଛି । ବ୍ୟଥିତ ପ୍ରବଳତର । ୨ ।
ଅଧରେ ଅଞ୍ଜନ ଗୃହୁ । ସଧରେ ଧରି ଥିବାର ।
ବାଧକ ସେହି ହେବାରୁ । ହୃଦ ମ୍ଳାନ ସେ ହେତରୁ । ୩ ।
ଶୟନ କୋହି ଥିବାରେ । ନୟନ ଘୂର୍ଣ୍ଣିତ ତରେ ।
ଅଧରେ ମୁ ଗୃହିଁବାରେ । ଆଦୃତ ନ ରହେ ଥରେ । ୪ ।

ଶୁଣିଥିଲା ଯାହା ମୁହିଁ । ଜାଣିଲା ପ୍ରତ୍ୟକ୍ଷେ ତାହ୍ୱ ।
କଣିଚ୍ଛି ତୁମ୍ଭଙ୍କୁ ସେହ୍ୱ । ପୁଣି ରଘୁନାଥ କହ୍ୱ । ୫ ।

## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ

ଅମିୟା । ବୃତ୍ତ ।

ସିନ୍ଦୂର ମୁଣ୍ଡ ମଇଳକ
କଜ୍ଜଳ ଏକ ସ୍ଥିତ ମୃଗମଦ-ରେଖା ।
ରଦକ୍ଷତ କ ଭୃଙ୍ଗାଘାତ ।
କେତକୀ ନ ନଖରେଖ ସତ । ୫୧ ।

ରାଗ ମଲ୍ହାଆ, ଆଡ଼ତାଳ ।
କ ବୁଝି କହବୁ ସବୁ ଜାଣି ଜାଣି ।
ଦେବୁ ଯେବେ ଏପରି । ସ୍ୱବନ୍ଧି ରମଣି ଅବୁଝାଣ ପରି ।
ଦେବୁ ଯେବେ ଅପବାଦ ନବସ୍ଥିର । ୧ ।

ସିନ୍ଦୂରଗମନୀ ବନ୍ଧୁ ଶୁଣ ଶୁଣ
ଛନ୍ନ ନହୋଇ ଏହା ସୁନ୍ଦର କେମନ୍ତେ ହେବ ବୋଲ ମିତ
ଗୈରିକ ହେଲେ ସିନ୍ଦୂର କ ଗୋ ଏହା । ୨ ।

ଅଂଜନ ନୋହେ ରଂଜନ ମୃଗମଦ
ଖଞ୍ଜନ ନେତ୍ର ସେନ କଞ୍ଜଘ୍ରାଣ ବଶୁ ଭୃଙ୍ଗଚାରେ ଫେରେ ।
ଓଷ୍ଠେ କ୍ଷତ କଲ ହୃଦେ ସତ ମାନ । ୩ ।

ନଖରେଖ ବୋଲ ଦୁଃଖ ରଖନା ରେ ।
ଦେଖ ନେତ୍ର ସୁମୁହିଁ ମୁଖରେ ଆଣୁ କେତକୀ ଦଳଦଳ ।
ବକ୍ଷରେ ଲଟିଲ ରଘୁନାଥ କହ୍ୱ । ୪୦୩ ।

## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ ।

ରଥୋଦ୍ଧତା ବୃତ୍ତ ।

ନ ହନେ ଲଭିଲ କାର ପ୍ରୀତିକ ।
କେଉଁରେ ରହିଛ କାଳ ଗତିକ ।
ଗଗବେତନ ସୁଧାର ଏକକ ।
ଏଣିକ ନ କହ ଭଙ୍ଗି ବାଣିକ । ୦ । ୫୨ ।
ରାଗ ସାରଙ୍ଗ । ତାଳ ଝୁଲୁଆ ।
ଏ ଜୀର ଗତି ଜାଣିଲି ଏଣିକ । ପଦ ।
ଯାଉ ସହିତ ରଜନୀ ଯାକ । ଜାଗର କଲେ ହେ ରସିକ ।
ଚାରୁ ଚାରୁ କରଜଗାର । ହାର ହୋଇଛୁ ହୃଦୟ ଉପର । ୧ ।
ଦନ୍ତ ଚିହ୍ନ ଅଧରେ ଦେଖି ।
ଅନ୍ତରେ ମୁନେ ହୋଇଛୁ ଦୁଃଖି ।
ଅନ୍ତର ନୋହିବାକୁ ଚନ୍ଦ୍ରକାନ୍ତ
ପରର ଯନ୍ତ୍ରର ଏ କ । ୨ ।
ପାଥୋଜ-ମୁଖି କିଶୋର କଥିତ ।
ଏଥର ହେଲେ ହୁଅ ନିବର୍ତ୍ତ ।
ହାତଧରି କହେ ରଘୁନାଥ ।
କର ଯାମିନିନାଥ ଏତିକ । ୩ । ୪୪ ।

## ଶ୍ରୀରାଧାଙ୍କପ୍ରତି ଶ୍ରୀକୃଷ୍ଣ

ମନ୍ଦାକ୍ରାନ୍ତା ବୃତ୍ତ ।

ରମ୍ଭା ରମ୍ଭା ଉରୁ ଉରୁ ବଶେ ଲୋକରେ ଲୋକରେ ଯେ ।
ନାହିଁ ରମ୍ଭା ସୁରବରବଧୂ ଶ୍ରେଣି-ଜମ୍ଭାରି ଠାରେ ।

ସମ୍ଭାଷନ୍ତେ ବଚନ ହସିତ ପ୍ରେମ ସଂଭ୍ରବନାରେ ।
ମନ୍ମାନନ୍ନ ରହିବ ଦୂରନ୍ତେ ଶମ୍ଭୁଶକ୍ର ନ ପାଇ । ୫୩ ।

ରାଗ କଲ୍ୟାଣୀ । ଏକତାଳି

ଏ ରସମୟ ବସନ୍ତ ।
ବିରସ ନକର ଚିତ୍ତ ।
ସରସରେ ପ୍ରାଣ ମିତ ।
ହରଷ କର ଜୀବିତ । ୧ ।
ଭ୍ରମର ଝଙ୍କାର ଶୁଣି ।
କାମର ବଢ଼ିତ୍ତୁ ଆଣି ।
ଚାମର ପଣରେ ପୁଣି ।
ମୋ ମରମେ ବଚ୍ଛେ ହାଣି । ୨ ।
କାନନ ପ୍ରିୟ ଡାଳରେ ।
ମନ ନ ରହେ ଥିରରେ ।
ଧନ ନ ସରେ ଦୁଃଖରେ ।
ଆନନକୁ ଠେକ ବାରେ । ୩ ।
କବିଚନ୍ଦ୍ର ରଘୁନାଥ ।
ଭଣି କହେ ମନୋରଥ ।
ଅବିଳମ୍ବେ ହେବ ସାର୍ଥ ।
ସେବିଲେ ସୁଚାଳ ପଥ । ୪ । ୫୪ ।

## ଶ୍ରୀକୃଷ୍ଣଙ୍କୁ ରାଧା ।

ଯାମିନୀ ନେଲେ ଯା ସଙ୍ଗେ । କାମୀ ସେ କାମିନୀ ଭୁଲେ ।
ରସ ହେ କେଳି ରସରେ । ବାହଙ୍ଗେ ଭୃଙ୍ଗବର୍ଦ୍ଧନେ । ୫୫ ।

ରାଗ ଶାବେରୀ । ଆଡ଼ତାଳ ।

ଯା ତାକୁ ମନ୍ଥା । ଜାଣିଲ ଜାଣିଲ ମନ୍ଥା । ଯା ଲୁଚିଲେ ପାସିଗ ନେଲ । ଜାଣୁ ମଣି ସେ ଜାଗରେ ଯା ତାକୁ ମନ୍ଥା । ୧ ।

ସୁନ୍ଦର ଅଞ୍ଜନ ଚନ୍ଦ୍ର । ସୁନ୍ଦରଚରେ ବନ୍ଧ୍ ହର ନହ ତା ମନ । ୨ ।

ନିଶା ଜଗାଇ କୁଞ୍ଜରେ । ଚସାଇବାକୁ ଦଶାଅ ମୁଖ ସ୍ତାଚରେ । ୩ ।

କହଇ କବ ସୁଧାଂଶୁ କହିଲେ ରାଧା ମୋହନ କୁହନା ବନ୍ଧୁ । ୪ । ୪୫ ।

ପଦ୍ୟ—ମନ୍ତ୍ରମନ୍ତ୍ରେ ଭରମନେ । ପ୍ରିୟୁକେ ପ୍ରିୟୁକେଷନେ । କାନ୍ତେ କାନ୍ତେ ମପୃ ରତେ । ଭାଷ ଭାଷ ହ୍ରିତାନନେ । ୪୬ ।

ରାଗ ଶ୍ରୀ । ଏକତାଳି ।

ଏକ ଭଙ୍ଗି ତୁ । ଅଙ୍ଗୀକାର ନ କରୁ । ରଙ୍ଗିମାଧର ନବ-ସଙ୍ଗିନରେ । ପଦ ।

ସଙ୍ଗରେ ମୋହର । ରଙ୍ଗରେ ବିହାର । ଭୃଙ୍ଗସ୍ତମାରେ ତୁ ନ ଭାଙ୍ଗ ଆଶାକୁ ଭ୍ରୂରୁ ଭଙ୍ଗିନରେ । ୧ ।

ବାମ ନୟନ ତୋ ବାମ ଦେଖି କାମ । ଯାମ ଯାମକରେ । ଶ୍ୟାମ ଦେଇଛ ହେମବରନରେ ।

ସୁନ୍ଦରି-ମଣି ଅସୁନ୍ଦର ଏ ରୀତ । ମନ୍ଦ ଦ୍ୱନ୍ଦ ବନ୍ଦ ବନ୍ଧୁ । କୁନ୍ଦରଦନ ଗୁଣ-ବନ୍ଧନରେ । ୩ ।

ପାଶରେ ବସ । ଦୋଷକୁ ନ ଘୋଷ । ଭାଷଇ ରଘୁନାଥ ଭାଷ ଭାଷ ବଧୂହାମିନରେ । ୪ । ୪୭ ।

## ରାଧା କୃଷ୍ଣଙ୍କ ପ୍ରତି

ଗଦ୍ୟ—ସୁକୁମାର ନୃପ-କୁମାର । ନୂତନ ମାର କେଉ ବାମାର । ଗଞ୍ଜନାଞ୍ଜନ ଦରପଣ ନୁହ ଦେଖ ଦରପଣ ପାବକ ବୁକ

ଅଶୟନେ ନୟନେ ଅୟନ ରହେ ଅୟନେ ନ ହୁଡ଼ ପହୁଡ଼
ବାସରେ ବାସରେ ରହି ନାଶପାଶରେ ।

ରାଗ ଝିଞ୍ଜୋଟି । ତାଳ ଝୁଲୁଆ ।

ଆହେ ବ୍ରଜପୁର ନରରାଜା ସୁତ, ମୋ ପୁରରୁ ଯା ଯା ।
କରି ବନିତା କହି ତାଠାରେ । ଯହିଁ ଜାଗର କଲୁ ରାଜା । ପଦ ।

ହୃଦେ ଅଙ୍କିତ କରଜରେଖ । ମୁଁ କେତେ କହିବ ଅତି
ଅଲେଖ । ଆହେ ବିବେକ । ମୁକୁର ଦେଖ ହାଣେ ମୁଖ ପ୍ରତିଭା ଯା ।୧।

ଅରୁଣାଧରେ ଦଶନଘାତ । ଘୂର୍ଣ୍ଣିତ ନୟନ ପଲକପାତ ।
କହୁଁ କହୁଁ ଗିର ହୁଅ ଅଚେତ । ବାସରେ ଥରେ ଶୋ ଯା । ୨ ।

ବନଜବଦନ ମଳିନ ଚୋର । ନୀଳ-ବସନ ପାଲଟି କର ।
ଯାବକ ହୃଦ ବହିଛ ଯାର । ମାନସେ କର ହେଡ଼ା । ୩ ।

ଭଣଇ ଦ୍ୱିଜ ପଦ୍ମନାଭ ଭାବରେ ଯଦି କଲ ଅଭାବ । ଲଭିବ
ପୀରତି ପରମ ଲାଭ । ଚନ୍ଦ୍ରବଦନ ଧୋ ଯା । ୪ । ୫୬ ।

## ଶ୍ରୀ ରାଧାଙ୍କୁ କୃଷ୍ଣ ।

ପଦ୍ୟ

ରହରେ ରହରେ ବନ୍ଧୁ । ନିରଖିରେ ନିରେଖିରେ । ଆଦର
ଆଦର ଯା ନା । ଭାଷ ଭାଷ ସ୍ମିତାନନେ । ୫୭ ।

ରାଗ ଭୈରବୀ । ଏକତାଳି ।

ଦରହାସି ଏବେ ଆଦର । ଦର ନାଶ ହୃଦର । ହର ଦୁଃଖ
ମୋହର । କର ଉଦ୍ଧାର । କାର ସ୍ଥିର ଗିର ସାର ନ କର ଶର ।
ବାର ବାର ମାର ମାରଇ ଉପରେଁ ତାର । ୧ ।

ଯଶ ଶଶିକି ଭୂ ପ୍ରକାଶ । ନାଶ ସୁର-ତମସ । ବଶ କୋକିଳେ

ନାସ୍ତେଶ ଋସ ବରସ । ଦାସ ଆସ ତୁ ନ ନାଶ ସରସ ରସ । ଭାଷ ଭାଷ କାଶଦ୍ଵାସ ବଚଣ ଚୋଷ । ୨ ।

ବହ୍ନ ଋଦ୍ଧୂନାଥ କହଇ । ଏହ୍ନ ଭାଟେଷ ସୁଦେହ୍ନ । ଚନ୍ହିଁ କ କର ସହ୍ନ । କହ୍ନଲ ମୁହ୍ନିଁ । କାହ୍ନିଁ ପାଇଁ ସହ୍ନ । ଗୁହ୍ନିଁ ବସିଛୁ ମହି । ନାହ୍ନିଁ ନାହ୍ନିଁ କେହ୍ନ ସାହ୍ନ ବହ୍ନବୁ ତୁହ୍ନ । ୩୪ ।

ମନ୍ଦାକ୍ରାନ୍ତା ।

ରାଧା କ୍ରୋଧାବଶରୁ ଅଧିକେ ଭାଷିବାରେ ନଗ୍ନଶେ ।
ବାଧାକ୍ରାନ୍ତେ ରହ୍ନ ରହ୍ନ ପୁନଃ ପଛକୁ ଗୃହ୍ନିଁ ଗୃହ୍ନିଁ ।
ଶ୍ରଦ୍ଧା ନୋହ୍ନ ହୃଦପୃଷ୍ଠତେ ଖ୍ରିତରେ ଶକ୍ରବାରେ ।
ରାଧାଗ୍ରେ ଏ ବଚନ କହିଲେ ସଙ୍ଗିନୀ ପ୍ରେମ ଭରେ । ୫୭ ।

ଶିଖରିଣୀ ।

ସୁଧା ସାଧ୍ୟା ବାଣୀ ନ କହ୍ନ ସହ୍ନ ଶ୍ରଦ୍ଧାବଶୁ ପୁଣି ।
ମୃଧା କ୍ରୋଧାବେଶେ ଶରୁଚ ନଖଅଗ୍ରେ ବସୁମଣ୍ଡି ।
ସୁଧାରେ ସାଧା ଭ୍ରୂ ସଦସ୍ୟ ହୃଅ ବାଟେ ପରଶନେ ।
ସ୍ଵଧାନେ ସୁନ୍ଦେହ ରସ ମଦନ ଭାବେ ପରଶନେ । ୫୮ ।

ରାଗ ଆଶାବରୀ । ଆଡ଼ତାଳ ।

ଏବେ ହେଲେ ମନ । ମୋହନକୁ ଧନ । ଦୁଃଖରୁ ରଖ ଉଧର ଧର । ଦେ ।

ନିକଟରେ ଚୋର । ଥିବାକାଳେ ମୁର-ବାରଣକୁ ସେ କେଶରୀ ସର । ଝାଣପଣେ ମାର । ମାଡ଼ିବାରେ ଶର । ରହିଲେ କୁଞ୍ଜବହାଗ୍ରି ହାଗ୍ରି । ୧ ।

ଯାହାକୁ ତ ଗୃହ୍ନିଁ । ମୋହ୍ନକୁ ହେବେ ସେହ୍ନ ରମା ଆଦ ମଦନାରନାରୀ । ସେ ଚୋର କଥାରେ । ନ ଡେଇଁ ତ ଗାରେ । ରହ୍ନଛନ୍ତ ନଡ଼ କର କର । ୨ ।

କୁଞ୍ଜ ସଦନକୁ ସେ ଯିବା ବେଳକୁ । ଦେବାରୁ ତୋ ପଣବାଣ ବଶ । ଶୁଣ ତୁ ଏଣିକ । ନ ଯାଇ କେଣିକ, ରହିବେ ମୋହ ଆଦେଶ ଦାଶ । ୩ ।

ବୋଲୁଥିଲ୍ କାଲ । ତୁ ପଗ ଛଇଳୀ । ଜାବର ଜାବ ମୋହର ଧର । ଆଜ ଗଲେ ଫେର । ଆଣ ବୋଳାକର । ଚଡ଼ିବ ସିନା ଆଦ୍ଧର ହର । ୪ ।

କହେ ରଘୁନାଥ । ଜବ ନଶାନାଥ । ମୁଁ କହିବାର ଚର୍ଲର ଭ୍ଲର । ସଖୀ ସଙ୍ଗେ ବସି । ଦୟାକର ହସି । ତୋ ଯଶ ରହୁ ଏ ପୁଗ ପୂର । ୫ । ୪୯ ।

## ଧଖୀଙ୍କି ରାଧା ।

### ଶିଖରଣୀ ।

ପ୍ରଭାତେ ଲକ୍ଷାଢେ ରଦ ଚଦ ମୁଁ ସେ ଲ୍ଭିଁଛ ସଖି ।
ଲଲଟେ ସିନ୍ଦୂର ପ୍ରକଟରୁ ଥିଲ ସୁନ୍ଦରତରେ ।
ଅନଙ୍ଗ ତା ନେବେ ପଲକତ ପଡ଼େ ଦୃଷ୍ଟିତ ବଶେ ।
ସଦା ଆହା ତାହା ବଚନ କହିବା ଧୂରକୁହନା । ୫୯ ।

ରାଗ ଢିଙ୍ଗାମଣ୍ଡ । ଆଡ଼ତାଳ ।

ନୋହିଲେ ନୋହୁ ସେ ପୀରତ । ସହି କେ ନତ ସହିବ ଗୋ ଏତେ ଅମୋନ୍ତ । କହିବା କଥା ଯେ ଗୁଡ଼ । ନୋହିବ ଭାବରେ ବୁଡ଼ । ବହି ଭଙ୍ଗେ ଭଙ୍ଗେ ସଙ୍ଗତ । ରହିଲେ ନତ । ୧ ।

ରଖିଥିଲ ଯେହ୍ବ ଗତରେ । ଅଖିଳ ସୁଖେ । ସୁଖୀ ହୋଇଥିବ ମନରେ । ଦେଖିଛ ମୁଁ ସାକ୍ଷାତରେ । ଲେଖିଲ ପର ଶଯରେ । ଅକ୍ଷୀଣରେ ଅଛୁ ଜାବକ । ସୁଖିତ ମୁଖ । ୨ ।

ଏ ବିରହ ବାଧା ମଙ୍ଗତ । ଅବଲମ୍ବେ । ସବଧିରେ କହୁଁ ଶ୍ରୀମତି । କବିଚନ୍ଦ୍ର ରଘୁନାଥ । ଭାବ କହେ ପ୍ରେମପଥ । ସେହିଲେ କ ଗତି ରହୁ । ଛବି କ ରୂହୁଁ । ୩ । ୫୦ ।

## ସଖୀଙ୍କ ପ୍ରତି ରାଧା ।

### ପୃଥ୍ୱୀ ବୃତ୍ତ ।

ଭ୍ରୂଜଙ୍ଗିମା ବିମୋହନେ ପ୍ରଚଳଭ୍ରୂଲତା ନର୍ତ୍ତନେ ।
ଭ୍ରୂଜଙ୍ଗିମା ବିମୋହନେ ମଧୁର ବଂଶୀଗୀତସ୍ୱନେ ।
ବନେ ଭୁବନରେ ଭ୍ରମି ଭ୍ରମି କରାଇ କୁଞ୍ଜାଳୟେ ।
ନିତାନ୍ତ ସୁରତାର୍ଥୀ ସେ କ ତବ ସଙ୍ଗତ ଭାଷ ନା । ୬୦ ।

### ବଙ୍ଗ ଝଙ୍କ୍ରୋଟ । ଆଡ଼ତାଳ ।

କହନା ସଜନୀ ରେ ଆଜ । ସହି ନ ପାରେ ଶ୍ୟାମ ପ୍ରେମ ଦାଜ । ପଦ ।

ସଙ୍କେତରୁ ଆଶା ବଳି । ଥିଲି ଅଙ୍ଗ ସଙ୍ଗ ଭଳି । ନ ଦେଖି ଦୁଃଖ ପ୍ରବଳ । ଭେଦି ଗଲାଣି ମରମକୁ ବଳି । ୧ ।

ଆସିବି ବୋଲି ସେ କହି । କୁଞ୍ଜରେ ମତେ ବସାଇ । କାହା ପ୍ରୀତିରେ ସେ ଯାଇ । ରହିଲେ ନଣି ମାନସ ମଜ୍ଜାଇ । ୨ ।

ତୋ ବାଣୀ ପରତେ କରି । କୁଳ ଶୀଳ ପରି ହରି । ମୋହନେ ପ୍ରୀତି ଆଦରି । ଏବେ ଆସି ମୁଁ ନୋହିଲି କାହାରି । ୩ ।

ଦ୍ୱିଜ ରଘୁନାଥ କହି । ଶ୍ରୀମତୀ ବିରସ ରୂହୁଁ । ନ ଭାଳ ଆଜ ତୁ ସହି । ଆଣିବି ତାଙ୍କୁ ମାନସ ରସାଇ । ୪ ।

### ମାଳିନୀ ।

ସରସମୟୁ ବସନ୍ତେ କାଳ ନେବୁ କେମନ୍ତେ ।
ନ ଦେଖି ନୟନ ପ୍ରାନ୍ତେ ଦୁଃଖ ଦେଇ ତୁ କାନ୍ତେ ।

ବ୍ରଜବଧୂ ସୁରତାନ୍ତ ବାଞ୍ଛା ଥାନ୍ତେ ପଣ୍ଡନ୍ତେ ।
ସେପରି ସ୍ୱତଃସବନ୍ତ ସ୍ୱପ୍ନ ନହୁଁ ତୁ ଶାନ୍ତେ ।୬୧।

ରାଗ ପଟଜ । ଆଡ଼ତାଳି ।

ଶ୍ୟାମ ପ୍ରୀତିକି କଣ୍ଠୋର ରେ । ସଂଚ ଦେବୁକି ପାଶୋର । ପଦ ।

ଏରସ ବସନ୍ତ ସମୟ ହୋଇଚି ଯେ ପିକ ଡାକରେ ଧୃତି ଖସୁଚି ।
ଯେତେବେଳେ ବଧୂ ଜଦେ ହୋଇପିବ ଅପ୍ସି ଗୋ ।
ସାହା ହେବ ସେ ନର ଅବନ୍ତିକରେ ଗତିକି । ୧ ।

ଯାହାର ହାର ବିହାର ଆହାର ସବୁରେ ଗୋ । ବାହାର ହେଲନ ତୋ ବାହାରେ । ଯେତେବେଳେ ହେଲେ ତୋ ମନ ନହେ ସମାଧାନ ଗୋ । ଏଥୁବଳି ଦେବୁ କି ବପତିକି ରେ ଚତିକି । ୨ ।

ଯେନା ଯେନରେ ମନାଇ ଥିବାର ପରତି ଗୋ । ମନା ହୁଅଇ ସେ ଯେବେ ଆସି । ମନାକରି ପୁଣି ଲେଉଡ଼ି ଅଣିବ ବୋଇଲେ ଗୋ । ଆଜ କେହ୍ନି ଅଛି ଗଜଗଣ୍ଡିକରେ ଗତି । ୩ ।

ଯାହାକୁ ଦେଖିଲେ ପଶୁପକ୍ଷିମନ୍ତ ଭୁଲେ ଗୋ । ପତି ସଙ୍ଗ ସ୍ୱାନ୍ତି କେ ପଟ୍ଟରେ । ତୋହୋର ସ୍ନେହକୁ ସେ ଚାହିଲେ ଅନୁସରି ଗୋ । କାହିଁକି ନୋହୁଚି ସେ ମୁରତି କି ରେ ରତିକି ।୪।

କବି କୁମ୍ଭଦବାନ୍ଧବ ଯଦୁନାଥ କହେ ଯେ । ଦ୍ୱାପରସ କଞ୍ଜଭୁଜକି ମାତି । ଯୁଗଳ ହୋଇ ଯେ ରହୁଥାଇ ନିତି ନିତି ଯେ । ଦୂର କରେ ଆସିଲେ ମୁଁ କତିକି ରେ କତିକି । ୫ ।

## ସଖୀଙ୍କି ରାଧା ।

ମାଳିନୀ ।

ପରିହରି ସବୁ ରାଗ ରଙ୍ଗରେ କାହିଁ ମାତି ।
ହାତରି ମଦନ-ଖାତି ଏଣୁକି ସାଧୁ ଜାତି ।

ବଳି ନ କହ ତୁ ଦୂତୀ କାଲୁ ସେ ନାଗାଙ୍ଗଣୀ ।
କି ତବ ବରଜକାନ୍ତ ଜାରତାରେ କି ମତି । ୬୩ ।

ରାଗ ଯଦୁକୁଳକାମ୍ବୋଜି । ତାଳ ଆଡ଼ା ।

ମୁଁ ହେଲି ଅସାର ଯେବେ ସେ ହେଲେ ସୁସାର ମା । କହ କହ ସ୍ନେହଟାଇ ମହତ ନ ସାର ମା । ପଦ ।

ଶ୍ୟାମବନ୍ଧୁ ପ୍ରେମ ପାଇଁ । ବାମ ଯେ ହୋଇଛୁ ମହ । ତା ମନ ଧରିବାରେ ତୁ ପଣତ ପ୍ରସାର ମା । ୧ ।

ଦେଖିଛି ମୁଁ ସାକ୍ଷାତରେ । ଦେଖିଲୁ ପର ଠାବରେ । ଲେଖିଅଛି ଅଳତାଦ୍ଧ ସେ କେଉଁ ଯୋଷାର ମା । ୨ ।

ଚାଟକକୁଳର ଲେଶେ । ଅଟକ ନ ମାନ ମୁଁ ସେ । ବଟ ସଙ୍ଗେ ଭୁଲିବାର ଫଳ ମୋ ଦଶାର ମା । ୩ ।

କବିଚନ୍ଦ୍ର ରଘୁନାଥ । ଭାବ କହେ ଏତ ସତ । ଠକର ନାହିଁ ଯାହାର କହିବା ଭଷାର ମା । ୪ ।

## ରାଧାଙ୍କ ସଖୀ ।

ମାଳଣୀ ।

ବ୍ରଜସୁତ ବ୍ରଜସଙ୍ଗେ ଧେନୁମାନଙ୍କୁ ରଙ୍ଗେ ।
ଧରି ବନକୁ ଯିବାରେ ଶଙ୍କା ଯେ ବାରେ ବାରେ ।
କମଳ-ମୃଦୁଳପାଦେ କ୍ଷୁଦ୍ରପାଷାଣ ବାଜୁ ।
ବ୍ୟଥିତ ଉପୁରୁ ଦୁଃଖେ ନେତ୍ରରେ ବାରି ଆଶୁ । ୬୪ ।

ରାଗ ଝିଞ୍ଜୋଟି । ଆଡ଼ତାଳ ।

ତୋତେ ଯଦ ନ ଲଗିଲାନ ଶ୍ୟାମ ବାଧା ।
ସଜନ ମୋର, କି ଗଲା ତୋ । ପଦ ।
ସେ ତୋ ଅପଧନ, ତୁ ତାର ଜୀବନ ପରାଏ ଦିଶୁଥିଲ ଗୋ । ୧ ।

ଟେ ଚନ୍ଦନରେ ଯାଚ, ଆସୁ ପ୍ରାଣ ଥାଇ, ଜରେ ଚଗ ଛଇଲା ଟେ । ୨ ।
କଥା ପଢନ୍ତରେ, କହିଲ ମ ଥରେ, ଦେଉ କଣ୍ଠା ରୁହିଲ୍ଲ ରେ । ୩ ।
ଆଜ ମୁଁ ୯ଣିକ, କହିବ କାହିଁକ, ଯଶ ବୁଦ୍ଧି ଆସିଲ୍ଲ ରେ । ୪ ।
କହଇ ଗୋପାଳ, କୃଷ୍ଣରାଧା କୋଳ, କର ସଖୀ ଭଣିଲ୍ଲ ଟୋ । ୫ ।

ମାଳମ ବୃତ୍ତ ।

ନ କହ ନ କହ ଦୁଷ୍ଟ, ତାର ଠାରେ କ ମାନ୍ତ ।
କିଚବକୁ ଲଭ୍ୟ ଖ୍ରନ୍ତ କମ୍ପ୍ରତ୍ତୁ ମୋର ଗ୍ରନ୍ତ ।
ମଧୂପ ମଶ ସୁଜାଷ୍ଟ ମଲ୍ଲିକା କୁନ୍ଦ ଯୂଥୀ ।
କରଇ କ ତବ ପ୍ରୀତି ସେ କ ପ୍ରେମ ସୁଜାତ । ୬୫ ।

ରାଗ ସୁରଟ । ଏକତାଳ ।

ଯା ଯାରେ ସଙ୍ଗିନ ତୁ । ତା ଠାରେ ସାର ନାହିଁ ରେ । ପଦ ।

ମ୍ରଣକ-କଥା କ୍ଷଣକୁ ଯାର ନାହିଁ ରେ । ତା ଭାବରେ ଭୁଲଲେ ଉଦ୍ଧାର ନାହିଁ ରେ । ୧ ।

ଯେମନ୍ତ ଘନେ ବିଜୁଳୀ ଥିର ନାହିଁ ରେ । ସେହିପରି ତା ହୃଦରେ ଶର ନାହିଁ ରେ । ୨ ।

ତୋ ତାରେ ତ ଭତର ବାହାର ନାହିଁ ରେ । ସେ ଧେନ କହୁଚ ମୋର ନାହିଁ । ୩ ।

ରଘୁନାଥ କହେ ଯା ସ୍ୱୀକାର ନାହିଁ ରେ । ତାକୁ ବଳେ ନେବାକୁ ତ ଜୋର ନାହିଁ ରେ । ୪ ।

ଗଦ୍ୟ

କଶୋରବର କଶୋଶ ନଗଣ-ପ୍ରୁଷ-ବଚନ-ରଚନ ଶ୍ରବଣେ ଶ୍ରବଣେ । ନାଗର ନାଗକେଶର କୁଞ୍ଜରେ ତଳ ତଳପରେ ବସି ବଶୀଭୂତ ନୋହିବାରୁ ସ୍ୱିନ୍ନରୁ କଟାକ୍ଷେରୁ ମଦନ ବେଦନ କାଳରୁତରୁ, ଭୃଙ୍ଗ-ଭୃଙ୍ଗୀ ସଙ୍ଗୀତରୁ, ମନ୍ଦ ମନ୍ଦ ବାତ ପଲ୍ଲବ -

ଚଳଚରୁ, କଳରବେ କଳହଂସକୁଳରମଣୀ ମଣିମଞ୍ଜିର ସିଞ୍ଜିତ କୁଞ୍ଜର-ଗମନା କୁଞ୍ଜରେ ପ୍ରବେଶ ଯାବ ଯାବ ବିରହବଶରେ ବିଭ୍ରମ କହ୍ନ ପ୍ରେମବଶରେ । ୧୦ ।

ସୂତ୍ରଧର ବୃତ୍ତି ।

ବାଳା ହେଳା ବଳାନା ରଭସବଶରେ ଯଧ ବାଣୀ ସୁନାଶା ।
ଲୀଳା ହେଳାରୁ ମୋହେ ସୁବରନବରନା ଭାବରେ ହାବରେ ମୂ ।
ଡୋଳା ଖେଳାଇ ରଙ୍ଗେ ସୁବସୁଣି ନଥ ଭ୍ରୂ ଜନ ଗୃହରେ ପ୍ରଭୁରେ ।
ଝୁଲା ଝୁଲାଙ୍ଗି ଭଙ୍ଗୀପ୍ରକର ପ୍ରକଟନେ ଏ ନିଶାରେ ସୁସାରେ । ୬୬ ।

ରାଗ ଚୋଢ଼ି । ତାଳ ଆଦ୍ୟ ।

କରକରଦନା ଟାଣକରନା ସାର ନ ହାର । ପଦ ।
ଜନା ଦୋଷରେ ନଜାନା । ମନା ନ କର କାମନା ।
ଅନା ବରସ ହୁଅନା ଜନାପବାଦେ ମଙ୍ଗନା । ୧ ।
ରସ-ବନ୍ତ ଯାବେ ରସ । ଯାଉ ସୁମନ୍ଥର ଯାସ ।
ଦାସରେ ନୁହ ଉଦାସ । ଅସ ନ ନାଶ ମୋ ଆଶ । ୨ ।
ରସାରେ ତୁ ମୋ ଭରସା । ଭୂଷା ନା କାମେ ସୁଭୂଷା ।
ନିଶା ପୂରଅ ମନଶା । ରସା ସ୍ୱେଦରେ ସୁରସା । ୩ ।
ଦରହାସି ମୋ ହୃଦର । ତରଳ ଭ୍ରୂହ୍ନି ମାତର ।
ଧର ଉରଜା ଜଦ୍ଧର । ହର ଏ ଦୁଃଖ ମୋହର । ୪ ।
ଏ ବେଦନା ଦେଖି ଏବେ । ଲବେ ଶତ୍ରୁ ନ ଟଙ୍କାବେ ।
ଭବେ ଏହା ନ ସମ୍ଭବେ ଯାବେ ରଘୁନାଥ ଯାବେ । ୫ । ୫୬ ।

ଗଦ୍ୟ

ଏସମୟେ ହେ ଶମୟେ । ଉଦଣ୍ଡ କୁସୁମକାଣ୍ଡ ପ୍ରଚଣ୍ଡରେ ଗଣ୍ଡରେ କାଣ୍ଡରେ ଖଣ୍ଡଖଣ୍ଡ କରବାରେ । ପୁଣ୍ଡରୀକ ବେଗରେ ରହ୍ମ ଆଗରେ । ପୁଣ୍ଡରୀକଭବନ ପୁଣ୍ଡରୀକନୟନ ସମଦାଖଣ୍ଡଳଦର୍ପ-

ଖଣ୍ଡନ । କୁଣ୍ଡଳୀମଦଗଞ୍ଜନ ବ୍ରଜମଣ୍ଡଳମଣ୍ଡନ ଦୈତ୍ୟଦଣ୍ଡନ ମଦନରେ । କହିଲେ ବାଣୀ, କୁଞ୍ଜସଦନରେ । ୮୧ ।

ମାଳଣୀ ।

ମଦନ କଦନ ଦେ ନା ବାଦରେ ମୋଦ ହୋ ନା ।
ସଦୟମନ୍ତି ତୁ ନୋହି ନିର୍ଦ୍ଦୟାଳୁ କୁହା ନା ।
ମଦଗଜଗତି ରାଧା ଆଜ ଦେବାରୁ ବାଧା ।
ପଦ ପଦେ ଚଳୁ ନାହିଁ ଭେଦ ନା ପଞ୍ଚବାଣେ ॥

ରାଗ ଭୈରବୀ । ଏକତାଳି ।

ମାର ଫୁଲଶର ନମାର । ସାର ପଣ ନ ସାର । ସାରସଗମନୀ ନିରାଶ ପରାଣରେ । ଧୀର ହଜାଇ ଅଥିର ହୋଇଛି ମୁହିଁ । ପଦ ।
ହର ସିନା ପର ନୋହର । ଚର ହାର ଚାପର । ୧ ।
ଭାବ ଗୁଡ଼ି ମୁହ ଅଭାବ । ଭାବ ତେଜ ପ୍ରଭାବ । ୨ ।
ଭଣି କବିଚନ୍ଦ୍ର ନ ଭଣି । ବାଣୀ ରହୁ ସୁବାଣି । ୩ । ୫୭ ।

ପୃଥ୍ୱୀ ବୃତ୍ତ ।

ହରି ତୁ ନିରନ୍ତରେ ଶର ଶରାସନେ ଯୋଖ ନା ।
ପରାଭବ ଧରାପରେ ନ ଦିଅ ମୋପରି ଦୁଃଖିରେ ।
ଖରାଂଶୁ ତନୟାତଟେ ବର ସରାଗ ହେଲାମିସା ।
ମରାଳଗମନା ଅନାଉଣି ପରାଣରେ ଭେଦିଛି । ୬୭ ।

ରାଗ ସୁରଟ । ଏକତାଳି ।

ବାଦକରି ମଦନ ତରଜନା । ଫଣୟୁ ପଶିହର ମୁ ହରି ହର ତୋ ପର । ପଞ୍ଚସୁମନଶର ବରଜ ନା । ପଦ ।
ମମ ହୃଦ ହାର । ମାର ସେ କି ବିଷଧର । ମଳୟଜ ରଜ ତୁ ଭସ୍ମ ମଣେନା । ଅତିଶୟ ମଞ୍ଜୁଳ ନବକୁବଳୟଦଳ । କଣ୍ଠେ ନୁହେ ଗରଳ ଗରଜ ନା । ୨ ।

ରାଧା-ନୟନ-ବାଣେ ତନୁ ଜରଜର । ଦୁଃସହ ଧୃତି ରତି-ପତି ହର ନା । ସୁବୁଧି ଗୁଣନିଧି ମୂର୍ଚ୍ଛିତ ଜନ ବଧି ଦୁଷ୍ଟକୁବୁଧି ପିଢି ଅରଜ ନା । ୪ ।

କହେ ଦ୍ୱିଜ ପଦ୍ମନାଭ ଶୁଣ ମାଧବ । ଆଣିବ ରସମୟୀ ସୁଖସଦନା । ବିହରତ ସଙ୍ଗର ଦର୍ପକ ଦର ଦୁର, କର ସବିନୟ ଟିର ସରଜ ନା । ୪ । ୫୮ ।

ଆର୍ଯ୍ୟା ବୃତ୍ତ ।

ବିରହେ ରହି ହରି ବିରହେ ।
ସୁମନେ ଭୃଙ୍ଗ ଦେଖି ଅତିଶୟ ବିମନେ ।
ବାର୍ତ୍ତା କହି ଚଳିବାରେ ।
ବନମାଳକ କହିଲେ ବନମାଳୀ । ୬୮ ।

ରାଗ ଯଦୁକୁଳକାମ୍ଭୋଜ । ତାଳ ସିପୁଠା ।

ଏହି ବାର୍ତ୍ତାନକର । କହିବୁ ମଧୁକର । ଏହିକି ମୋର ନକର । ଅଦ୍ଭୁତ ହୃତବାଣୀ । ସେହି ନ ଜାଣି ପୁଣି । ରହିତ କ୍ରୋଧଭରେ । ଯହିଁ ରମଣୀମଣି । ୧ ।

ଦିନକରେ ସୁଦେହୀ । ତା ନଖେ ଲେଖି ମହୀ । ଆନନ ମୋ ମୁଖିଗଲ ସେ ନବ ବାଳା ଗୃହିଁ । ମାନସକୁ ମନାଇ ମାନ କରିବା ଧିକ । ମାନବନ୍ତି ବୋଇଲ । ୨ ।

ସଞ୍ଜବେଳରୁ ଆସି । କୁଞ୍ଜସଦନେ ବସି । କୁଞ୍ଜରଗମନୀ ବାଳା କୁଞ୍ଜ ପ୍ରକାଶ ପାଇ । ରଞ୍ଜନ କରୁଥାଇ । ଅଞ୍ଜନକେଶୀ ସୁଖ । ଭଞ୍ଜନ ଏବେ କଲା । ୩ ।

କହଇ ରଘୁନାଥ । କବି ରଜମାନାଥ । ଅବିରତ ଶ୍ରୀହରି ଧ୍ୟାଇ । ଭୁବନରେ ଯେତେ ଜନ । ଭଜ ନନ୍ଦନନ୍ଦନ । ଅବିଳମ୍ବେ ହେବ ପାର । ଆନ ଏଥେ ନ ଚିନ୍ତନ । ୪ । ୫୯ ।

ଆର୍ଯ୍ୟା ।

ଅଥ ରଜନୀନାଥ ବଦନା ମନ୍ତ ରନ୍ତି ଚଞ୍ଚଳେ ସୁଖ ସଦନା ।
ଭୃଙ୍ଗର ଗୁଞ୍ଜନ ସନ୍ଧ୍ୱ । ଚମ୍ପକମୂଳେ ବସିଲେ ମୁଖ ଶୁଖାଇ । ୬୯ ।
କୁଞ୍ଜରଗମନା ସମ୍ମୁଖେ । କୁଞ୍ଜରେ ରହ୍ନ ନାଗରେନ୍ଦ୍ର ଅନ୍ତ ସମ୍ମୁଖେ ।
ଲଳିତା ଅନ୍ତମନ୍ତ ବରସେ । କହ୍ନ ସାରଙ୍ଗାକ୍ଷ ବଶାଖିକା ପାର୍ଶେ । ୭୦ ।

ରାଗ ହୁସେଣି । ଆଡ଼ତାଳି ।

ଆସି ଯାଇଛୁ ସିନା କରମକୁ ଗୋ । ରାଧା ରୁଷିବା ଥାଇ କି ଶ୍ୟାମକୁ ଗୋ । ବ୍ରଜଯାକ ସର୍ବେ ତାର । ସେ ବୃଷଭାନୁ କୁମାର । ଏଥିରୁ ନ ଜାଣେ ତାରତମକୁ ଗୋ । ୧ ।

କେ ହେଲେ ସ୍ୱଲୋକର କି । ସଜନ ଦୁର୍ହେଁ ଦୁହିଁକି । ଭ୍ରମରେ କରିବାର ଚରମକୁ ଗୋ । ୨ ।

ଅପରାଧ କେତେ ଥର । କ୍ଷମାକରି ନାହିଁ ତାର । ଯାଉ ବୋଲି ପଛ କରି ତମକୁ ଗୋ । ୩ ।

ଆଳୀକି ଦେଖିଲେ ଯାର । ପରିଗୃହ ପରିଚର ହୋଏ ଯେ ତେଜି ଲଜ ସରମକୁ ଗୋ । ୪ ।

ଗୋପାଳକୃଷ୍ଣ ଭାଷିତ । ଜାଣି ସଙ୍ଗିନୀ ଇଙ୍ଗିତ । କଲି ଦୋଷ ଭେଦିବ ମରମକୁ ଗୋ । ୫ ।

ଲଳିତାଙ୍କୁ ପ୍ରତି ବିଶାଖା ।

ପଦ୍ୟ—ଲଳିତେ ଶୁଣ ମୋ ବାଣୀ । ଚଳିବାର ନୁହେ କି ସେ ଆସିବ ବୋଲି ଯେ ଭାଷି ନିଶା ରହିଲେ କା ପୁରେ । ୬୧ ।

ରାଗ ରେଗୁପ୍ତି । ଆଡ଼ତାଳି ।

ରୁଷି ପାରିଲେ ସେ ଧାଇଁବେ ରୁଷି ଗୋ । ତୋଷିବେ ବୋଲି ସେ ଟେସି ପ୍ରତିଆଶେ । ବସି ସାରିଲି ଯେ ନିଶି ଗୋ । ପଦ ।

ସଜ କରାଇ ଯେ କେଳିଗୃହକୁ । ସଜାଡ଼ାଇ ସୁବେଶରେ ଦେହକୁ । ସଜପଦ୍ମମୁଖୀ ସଜନୀ ନ ରଖି, ନିଞ୍ଜରୁ ଯେ ଥିଲା ଆସି ଗୋ । ୧ ।

ସୁମନସ ଲଗି ହେବେ ସେ ବୋଲି । ସୁମନରେ ଗୁନ୍ଥି ଥିଲା ଛଇଲୀ । ପ୍ରେମରସେ ପୂରି, କାମନା ସେ କରି କାମଣରେ ହେଲା ହାସି ଗୋ । ୨ ।

କାନନକୁ ସଖୀସଙ୍ଗେ ଯେ ଯାଇ । ଇନ ସନ୍ନିଧିରେ ନିତ୍ତ ପୂଜଇ । ସେ ନ ଆସିବାରେ ଦିନ ବଞ୍ଚିବାରେ । ଆନ ସ୍ନେହନ୍ତୁଲେ ରସି ଗୋ । ୩ ।

ପରଜନ ଗୁରୁଜନ ନକର । ତରଜନକୁ ସହି ଯେ ନକର । ବରଚରେ ମିତ । ଅରଜିତ ଚିତ୍ତ । ନିରତ ହୋଇ ଯେ କ୍ଳେଶୀ ଗୋ ।୪।

ସନ୍ନିଧିରେ ସହି କହୁ ଏ ବାଣୀ । କବିସୁଧାଂଶୁ ରଘୁନାଥ ଭଣି । ଭାବ ଏହା କହି ସୁବିବେକୀ ହୋଇ । ନ ବର୍ତ୍ତିବ ହେଲେ ଦୋଷୀ ଗୋ । ୫ । ୭୧ ।

## ବିଶାଖାଙ୍କ ପ୍ରତି ଲଳିତା ।

### ଆର୍ଯ୍ୟା ।

ଯାରେ ଭୁଲିବ ସମଜାରେ । ଯାରେ ଧଇତ ସହି ଦୁଃଖ ମଜ୍ଜାରେ । ବାରଣଗତି କି ନିବାରି । ବାରଣ କରୁ କରଭୋରୁ ମାନକୁ । ୭୨ ।

## ଲଳିତାଙ୍କୁ ବିଶାଖା ।

### ଦ୍ରୁତବିଲମ୍ବିତ ବୃତ୍ତ ।

କରିଛୁ ଯେ ଅପରାଧ 'କୃପା'ବ୍ଧିରେ (ବ୍ଧି) ।
ଧରି କରେ ପଦ ତାର କହୁ ସ୍ୱୟଂ ।

ଝରକରେ ଯନ୍ଦ ନୋହିବ ବୁଢି ତା ।
ଥରଥରେ କହିବ ନଗୋ ବୁଝାଇ କେ । ୭୩ ।

ରାଗ କାମ୍ବୋଜ । ତାଳଆଦି ।

ସମଯାଜ ନଗୋ ସେ ଶ୍ୟାମ ଯାଜ୍ ଗୋ । ପଦ ।

ରାଧା ଗୁମାନ ଦେଖି ହରି ହେବାରୁ ଦୁଃଖୀ । ସଖୀଙ୍କ କେଉଁ
ସଖୀ କହିବାରୁ । କୃଷ୍ଣ କତବଶୀତ । ଭାବ କହେ ସେ ଦୂତୀ । ୧ ।
ହରି କରିବା ଦୋଷ । ମୋହରି ବୋଲି ବାସ ନେଷ ପ୍ରସାରି
ମାଟିବାର ବେଳେ । ତିନ୍ତିଲା ଅଶ୍ରୁଜଳେ । ପଡ଼ି ଚରଣ ତଳେ । ୨ ।
ଆସିବ ବୋଲି ରାତି । ଭାଷି ଇତରେ ମାତି । ବାସି ଯେ କଲ୍ପତାର
ଟେଟଡ଼େ ବେଶ । ଏହା ନକ ଜଟଚ । ଏଥୁ କି ହୋଏ ଚତ୍ତ । ୩ ।
ହେବ ବୋଲି ସୁଭାଗୀ ରଜନୀଜାଗ କରି । ଧରାରେ ଚେତନୁଅଛୁ
ଯେହ୍ନ ଶ୍ୱାସ । ମାନସ ତୋଷିବାକୁ । କସ କହିବ ତାକୁ । ୩ ।
ଶିଖଣ୍ଡମଯୂ ଚୂଳ । ଯାକ ଅଳତା ବୋଳ । ଅଙ୍ଗରେ କ୍ଷତ
କେଉଁ ହେଲ ବୋଲି । ପୁଚ୍ଛିବ ଯେବେ ସହି । ବୋଲାଇବ କି କହି ।୫।
ଭାଷିଲେ ଜଳନ୍ତର । ଅବନୀ-ପୁରନ୍ଦର । ଦଖୀ ବୋଇଲେ ଏହା
ସତ ସିନା । ଦୂତ ଏଥି ମଦନ । ହୋଇ ଦୁହିଙ୍କ ମନ । ୬ । ୭୨ ।

ଗଦ୍ୟ—କହି ଏପରି ପରିଣତବୟାଧରୀ ଧରଣୀଶୋଭିମା ମଣ୍ଡି
ଅତିଲୋଭ୍ନୀ, ଲଳିତା ଲଳିତାଗମନେ । ସ୍ୱଲେଙ୍କ ସୁମନେଷୁ ମୋହି
ସୁମନେ । ସ୍ୱରହରେ ରହରେ । ସ୍ନେହରେ ତଳପରୁ ଉଠି
ବେଗରେ । କହିଲେ ପହିଲେ ସରାଗରେ । ୧୨ ।

ଶିଶ ପଦ୍ୟ—ସଞ୍ଚାରି କହଯାଇ ପଞ୍ଚାସ୍ୟ-ଉଦରୀକ ବଞ୍ଚାଇ
ଦାଅ ନା ତୁ ସଞ୍ଜ ଯଶକୁ । ମନ୍ଦାର ଅଧରୀକୁ ଫନ୍ଦା ମୁଁ କରିଥିଲି ।
କୁନ୍ଦ ଉର ଦଶନା ତ ଦ୍ୱନ୍ଦ ବନ୍ଧିଲି । କଞ୍ଜାତନୟୁନାକୁ ରଞ୍ଜାଇ କହି
ପଦେ ସଞ୍ଜାତ କରୁ କେଳିକୁଞ୍ଜ ସଦନେ । କାନ୍ତାର ପରସରେ

ସନ୍ତାପ ଛୁଟିବରେ ସନ୍ତାନ ସତ ସେ ତ କାନ୍ତ-ପଦରେ । ଜାଣୁ ମଣିକ ଭାଷ ଯାଇ ଭାଷ ବେବେଗ । ଆଣୁ ମତି କ ତାର । ଆଜ ଅନଙ୍ଗ-ରଙ୍ଗେ । ଝାଣ ଗାନ୍ତ ନ ଥାଇ ଶଙ୍କେ । ପ୍ରାଣ ମୋ ଦେଖୁ ସଦେ ପଙ୍କଜାକ୍ଷୀ । ୧ ।

ରାଗ ଆହାରୀ । ଚଢ଼ତାଳ ।

କହ ଗୋ । ଭୁଲ୍ଲି ଯାଅ ଗୋ । ସଖୀ କ ଥରେ । ପଦ ।

କହ ସବାଗରେ । ରହ ତା ଆଗରେ ;

କୁହନା ନ କର ମୋହ ବଧୂପୁରେ । ୧ ।

ମନ୍ଦପାଳରୁଚ । ମନ୍ଦମନ୍ଦରୁଚ ଦ୍ୱନ୍ଦ କରୁଚ ଏବେ ।

ସୁନ୍ଦରୀ ବରହେତ । ୨ ।

ଶୁଣି ବଚନପୁ ମୋର । ଜାଣି ଦୁଃଖନାକର ।

ଏଣୀସୁନୟ୍ନନାର । ପାଣିଧର ସତ୍ୱର । ୩ ।

କହେ ରଘୁନାଥ । କବ ନଶାନାଥ ।

ମୋହନ ସଖୀକ କହବା ଚରେତ । ୬୩ ।

ଆର୍ଯ୍ୟା ।

ଦୋଷ ନ ଗୃହ୍ଣାଁ ବାଳା । ବେଷରେ କରତ ମତେ ହେଲା ।

କହ ଗୋ ଯାଇ କୃପାରେ । ମାନବଣ୍ଟି ମାନକୁ ବୋଧି ନ ପାରେ ।୭୪।

ରାଗ ଆଶାବରୀ । ଆଡ଼ତାଳ ।

ସକ୍ଷିଗୋ କହିବୁ ତୁ ଏହା । ସେହି ନ କଲେ କରୁଣା ।

କେହି ନାହିଁ ସାହା । ପଦ ।

ଆଶା କର ଶଶ ନାଶ ଆଜଯାଏ ଅଛୁ ।

ନଶାନାଥର ହୃଦରେ ବସା କରେଚ । ୧ ।

ଶଶୀ କେମନ୍ତ ସୁନ୍ଦର ସମସ୍ତେ ତ ଜାଣ ।

ନଶିକ ଆସି ରସୁଚ ନ ଥିଲ ହେଁ ଗୁଣ । ୨ ।

ଗୁନ୍ତକ ସାନ ତାବାଙ୍ଗୁ । ଜଳଦ ତ ଉଦରେ ।
ଚାତକୀ ଦେଖି ତୃଷ୍ଣାର୍ଥକ । ଯାଚନ ନ କରେ । ୩ ।
ଅଳିକି ନଳିନ ରସେ । ଅନୁଗତ ମାନ ।
ବିଳଶୋଭ୍ନା ନ ଦେଜ୍ୟ । ଜଳାରୂପ ଯେନ । ୪ ।
କବି ନିଶାନାଥ ରଘୁନାଥ ଏହା ଭଣି ।
ଈଶ୍ଵଳଦେ ଦୂତୀ ବୋଲେ ଅତି ମୃଦୁବାଣୀ । ୫ । ୬୪ ।

## ଶ୍ରୀରାଧାଙ୍କ ପ୍ରତି ଦୂତୀ ।

### ପୃଥ୍ୱୀ ବୃତ୍ତ ।

ବିଳାପ ସୁକରେ ହେ ଘନବଳାଶ ରହ୍ନଦୂତୀ ।
ଜଳାବତୀ କଳ ପଦ୍ମ ହରଷରେ କୃପା ଚିତ୍ତରେ ।
ବିଳାସବତୀ ବାଳିକା ଭ୍ରମରମାଳିକା କେଶୀ କି ।
ବିଳାଇ କଣ୍ଠବ କଥା ନ କରୁବା କୃଷେଣ ସେ କରୁ । ୬୫ ।

### ସ୍ୱର ଖମାଚ । ତଉତାଳ ।

ଜଣାଇବି ପିନା ବାରେ ବାରେ ରସ-ବତୀ କି ।
ଶୂନ୍ୟା ନୋହିଲେ ମୋର କି ଉପାୟୁ ଅଛୁ ଏଣି କି । ପଦ ।
ଶିଖାଇ ପ୍ରଣୟୁ ଖ୍ୟାତି । ଦେଖାଇ ଅନେକ ମାତି ।
ଦେଖା ଦେଖି ହେଲ ପରି ଉଚିତ ସ୍ୱରଣ୍ଡି କି । ୧ ।
ଝୁଲାଇ ମନ ମନରେ । ଛଳାଇ ତାକୁ ପ୍ରେମରେ ।
ହେଲା ତେଜ ବାଳା ବଳାଇଲ ପରି ମଣ୍ଡଳ । ୨ ।
ତୋ ଲଗି ମୁରଲୀଧର । ହେଲ ଏଥର ଅଥିର ।
ଭୁଲ ଭୁଲ କରିବାର ହୋଉ ବୋଲ ଏଣ୍ଡକ । ୩ ।
ଦ୍ୱିଜ ରଘୁନାଥ ଭଣି । ଦୂତୀ କିଶୋରୀଙ୍କୁ ତୋଷି ଗଜଗାମି
ନି କଣ୍ଠକୁ କଲେ ବେଗେ ଗଣ୍ଡକ । ୪ । ୬୬ ।

### ମାଳଶ୍ରୀ ।

କହିଲ କହିବ ବୋଲ କାତରାତ୍ୟନ୍ତ ଜାଣି ।
କହିବ ମୁଁ କେଉଁ ଲାଜେ କାମିନୀ କୋପ ଗୃହିଁ ।
ରହିଚ ତ ଅତିଦୁଃଖେ ଗାଢ ହେବା ନାରାଣେ ।
ସହି କରିବ କି ଯେହି ଜାଣିଚ ଚୌର୍ଯ୍ୟଶାନ୍ତ । ୭୭ ।

### ରାଗ ଧନାଶ୍ରୀ । ଏକତାଳି ।

ଜଟି କହିବାକୁ ସଚେ କି ଅଛୁ ହେ ।
ସାକ୍ଷତେ ଯେ ରେହୁର ପଣ ଦେଖିଚ ହେ । ପଦ ।
ହଠ କରି ଅଛୁ ସେହି । ଅଳକ ଅନାଇ ନାହିଁ ।
ଅଠକ କଳା ସଖୀଙ୍କି ହୋଇଚ ହେ । ୧ ।
ପିକକୁ ମୁଁ ନ ଦେଖିବ । ବୋଲି ମନେ ମନେ ଭାବ ।
ନକଠ ରସାଳ ରସେ ଗୁଡ଼ୁଛୁ ହେ । ୨ ।
କହିବ ବୋଇଲେ ତାକୁ । ମୁହଁ ଅଛୁକି ଆମ୍ଭଙ୍କୁ ।
ଯହିଁ ତହିଁ ସାକ୍ଷୀ ସେ ରହିଚ ହେ । ୩ ।
କହେ ରସେ ରଘୁନାଥ । କବି କୁମୁଦନୀ ନାଥ ।
ମୋହନ ବୋଇଲେ ଦୋଷ କରିଚ ଗୋ । ୪ । ୭୮ ।

## ପୁଣି ଶ୍ରୀକୃଷ୍ଣ ।

### ମାଳଶ୍ରୀ ।

ସହି ନ କହିବୁ ଯେବେ ଯାଇ ମୋ ଦୁଃଖ ଏବେ ।
ରହିବ କପଟ ରାମାରହ ହସ୍ତେ ନ ପାଇ ।
ରହିବ ଯେବେ ନାରାଣେ ରାଜ୍ଞ ହେଲେ ପକାଇ ।
କହିବୁ ପ୍ରଣୟ ଭାବେ କାମିନୀ ଶଠ ଜାଣି । ୭୯ ।

ରାଗ ଆଶାବରୀ । ଆଡ଼ତାଳ ।

ନ କହିଲେ ପଦେ ନିପଟ ବିପଦେ ।
ନିକର ବୁଡ଼ାଇ ଦେବୁ ସିନା ଗୋ । ପଦ ।

ନ ଜାଣି ଜାଣିବା ଦୋଷ ହେଲେ ସେବା ନ କରିବ କ୍ଷମା ଯଦ୍ୱ ନବୀନାରେ । ବୁଝାମଣି ହେଲେ ଉଣା ବୋଲିବେ ଲୋକଙ୍କ କେତେ ଭାବନା ରେ । ୧ ।

ତୁ ତାର ସଜନୀ ମୁଁ ତୋର ଭଜନୀ ।
ତୋ ଶତ୍ରେ କରୁଣା କରୁ କି ନା ଗୋ ।
ସେ ତ ଦୟାବନ୍ତଙ୍କ ଯେଣୁ ବିନତି
ବୋଲିବୁ ଗତି ନାହିଁ ତୋ ବିନା ରେ । ୨ ।

କୁଞ୍ଜରେ ବସିଛି ତୋ ବାଟ ବୁହୁଁଶ । ନ କହିଲେ ବୁଝ ମୋ ନିବେଦନା ରେ । କୁଞ୍ଜର ଗତି ହେଳ ମିଥ୍ୟା ମନୁ ହେ ଆଜ । ଯମୁନା ରେ ଝାସ ଦେବ ତୋ ନା,ରେ । ୩ ।

କହେ ରଘୁନାଥ କବି ନିଶାନାଥ ମୋହନ ନିଷ୍ଠୁର ଜଳ-ପନାରେ । କହିଲେ ସଜନୀ ଆଣିବ ରଜନୀ । କହି ବନସୁନାଯୁ କଲପନାରେ । ୬୭ ।

## ଦୂତୀ ।

### ରଥୋଦ୍ଧତା ବୃତ୍ତ ।

କୁଞ୍ଜରେ ବଶ ସୁକୁଞ୍ଜ ହାସ ହେ ।
ଖଞ୍ଜନାକ୍ଷୀକି ମନାଇ ଆଣିବ ।
ଗୁଞ୍ଜମାଳୀକି ଛୋଡି ସୁରିଁସରେ ।
ରଞ୍ଜନେ କହି କିଶୋରି ପାଶରେ ।

## ମନ୍ଦାକ୍ରାନ୍ତା

ଶଯ୍ୟା ତ୍ୟଜ୍ୟା କରି ତଳନ୍ତଳପେ ଲୋଟୁନ୍ତି ନିତ୍ୟଶେ ।
ରାଧା ବାଧା ହର ବନ୍ଧୁ ବଦନେ ନାହିଁ ତା ଭିନ୍ନ ବାଣୀ ।
ଶ୍ୟାମ ଶ୍ୟାମାଙ୍ଗ ଝଳ ନ ଦିଶେ ଧୂସରେ ଧୂଳି ଲାଗି ।
ଧାମା କାମାତିଶପୂ ନ ରଖେ ବାଣ ମାରି ପ୍ରତାପେ । ୮୦ ।

## ରାଗ ଆଶାବରୀ । ଆଁଡ଼ତାଳି ।

ନ କଲେ ତୁ ମୋର । ସେ ହେବେ କାହାର, ମା
ନ ବୋଲଇବ କି ଯେ ଯାହାର ସେ ତାହାର ମା । ପଦ ।
ଫୁଲ ତୋଳି ଯାଇଥିଲି ଦେଖି ତା ଆତୁର ଆକୁଳରେ,
ଉଡ଼ି ଗଲା ସାହାସ ମୋହର ମା । ୧ ।
ତଳ ତଳପରେ ଗଡ଼ି ହେବାର ଅଥିର ।
ଦେଖି ଦେଖି କାହା ଚିତ୍ତ ନୋହିବ କାତର ମା । ୨ ।
ତୋ ଦୁଃଖ ଦେଖି ସେ ଛାଡ଼ି ନେଲାନି ଆହାର,
ବଳ ଥିଲେ ବଳେ ଆସି ଧରନ୍ତେ ପସୂର ମା । ୩ ।
ଶର ମାରି ମାରି ସ୍ମର କଲାନି ଅଥିର ।
କହେ ଯଦୁନାଥ କୋପ ଏଥର ସମ୍ବର ମା । ୪ । ୭୦ ।

## ମାଳିନୀ

ରମଣି ମୃଣାଳିପାଣି ଦୁଃଖ ତୁ ଜାଣି ଜାଣି ।
ନ କହୁ ସରସ ବାଣୀ କାହିଁ ପାଇଁ ସୁବାଣି ।
କି କହିବ କହ ଏଣୀ-ଲୋଚନା ତାପ ଶ୍ରେଣୀ ।
ଶୁଣି ତୁ ବରଜୁ ପାଣି ଲୋଚନୁ ଗୁରୁଶ୍ରେଣୀ । ୮୧ ।

ରାଗ ଆଶାବରୀ । ଆଡ଼ତାଳ ।

କ କହିବ ସେ ଶ୍ୟାମକୁ । ପ୍ରାଣ ସଜନ ଯାଉଛ ଗୋ । ପଦ । ଦେଇ ଆସିଛ ଅବଧି । ଘଡ଼ିକ ଲବଣ୍ୟନିଧି ଗୋ । ବଳିଛ ଗଲିନ ଯାମକୁ । ୧ ।

ତା ଦୁଃଖ ଜାଣ ଯା ଶୁଣି । ଛୁନ ହେଲୁ ଗୁଣମଣି ଗୋ ଆସିଛ ସିନା କରମକୁ । ୨ ।

କରି କେତେ ପ୍ରତି ଆଶା । ତୋଳିଛ ଯୋଷା ଶିରଭୂଷା ଗୋ । ପଠିଆଇ ଥିଲେ ସ୍ତମ୍ଭକୁ । ଏଣା ସେ କେଶର କୁଞ୍ଜେ । ବସି କଣ-ଳପୁ ଶେଯେ । ଧ୍ୟାନ କରେ ତୋ ଆଗମକୁ । ଆଳ ଚେଳାଞ୍ଚଳ ଧରି । ବୋଇଲେ ନବ କଶୋଗ୍ମ ଲଳିତ ହୋଇଛ ବାମକୁ । ୪ ।

ଗୋପାଳ କୃଷ୍ଣ ଭାଷିତ । ନ ଗ୍ଲାଡ଼ ଆଳୀ ପଣନ୍ତ ।
ବୋଇଲେ ଚ୍ଛେଲି ବାଷମକୁ । ୫ । ୭୧ ।

## ଶ୍ରୀରାଧାଙ୍କୁ ଦୂତୀ ।

ମନ୍ଦାକ୍ରାନ୍ତା ।

ମନ୍ଦେ ମନ୍ଦେ ପବନ ବହୁଛି କୁନ୍ଦମାଳାର ଗନ୍ଧେ ।
ବୃନ୍ଦେ ବୃନ୍ଦେ ପଞ୍ଜନ ଶୁଣ ମାକନ୍ଦ ବୃକ୍ଷେ ମିଳନ୍ଦେ ।
ଦ୍ୱନ୍ଦେ ଦ୍ୱନ୍ଦେ ଭ୍ରମି ଭ୍ରମି ବସେ ତୋଷେ ହୋଇ ମରନ୍ଦେ ।
ସନ୍ଦେହେ ତୁ ନ ରସି ରସରେ ବନ୍ଧ କେଳି ପ୍ରବନ୍ଧେ । ୮୨ ।

ରାଗ ରାମକେରୀ । ଆଡ଼ତାଳ ।

ଆଜୁ ଟିକାକୁ ପେ । କାହିଁକି ଦୁଃଖ ତୃଷ୍ଣା ।
ଶ୍ୟାମ ମୋର ଜୀବବନ୍ଧୁ ବୋଲି ପିବ ଏହି ଶ୍ରୀ ମୁଖରୁ ଶୁଣା । ପଦ ।
ସରଦାର ମଧୁ ଫରମାସିଲାନି ନିକୁଞ୍ଜମନ୍ଦିର ମଣ୍ଡା ।
ଅନଙ୍ଗରଣ ରଙ୍ଗ ସ୍ଥଳେ ଝଡ଼ବ ଶୃଙ୍ଗାରମଙ୍ଗଳ ଝଣ୍ଡା । ୧ ।

ସ୍ମରସମସ୍ତ ସଞ୍ଚର ସମସ୍ତ ସବ୍ୱରୂପେ ହୋଇବାକୁ ।
ନଜ 'ଜସ୍ପୁ ହେଉ କେତୁ କରବୁ ତୁ କୋମଳ ଶ୍ୟାମଲତାକୁ । ୨ ।
ମଳବା କ୍ଷଣି ତୋ ପୀୟୂଷ ଅଧର ମୁଖ ସୁବାସ-ରଞ୍ଜବ ।
ମୁରଲୀ ମୋହନ ଖ୍ୟରଳ ଚୁମ୍ବନ ମନରୁ ପାସୋର ଯିବ । ୩ ।
ତବନ୍ତରେ ତୁ ମୋଠାରେ କରୁଣା-ରସ ସିଞ୍ଚ ବା ନ ସିଞ୍ଚ ।
ମିଳାବ ତୋ ପଦ ତଳକୁ ଶିଖଣ୍ଡମସ୍ତୁ ଚୂଳାଞ୍ଚଳ ଲଞ୍ଚ । ୪ ।
ଗଜରବରନା ଗଜରବମନା ହୋଇ ମନ କଲେ ତାରେ ।
ହବାର ବଣିକ ମିସାଇବ ହରମଣି କନକଲତାରେ । ୫ ।
ମନ୍ଦ ସଖୀଗିରେ କଶୋଷ୍ମ ସଧୀରେ ବୋଇଲେ ଶ୍ଳେଷେ ଯା ମନ୍ଦା ।
ଭଣିଲେ ଶ୍ରୀ ଜଗନ୍ନାଥ ସମ୍ପୂର୍ଣ ଗଜପତିମହାରାଜା । ୬ । ୭୨ ।

## ଶ୍ରୀରାଧାଙ୍କ ଉକ୍ତି ।

### ଦ୍ରୁତ ବିଲମ୍ବିତ ବୃତ୍ତ ।

ମଦନ ମୋହନ ଗୋ କୁଳଚନ୍ଦ୍ରମା ।
ବଦନ ପଙ୍କଜ ଚୁମ୍ବି ସରାଗରେ ।
ମଦନ ଭାବ ବସେ ନତ ଥୋଇଲା ।
କଦନ ପାଉଛ ଜାଣ ବିଶାଖିକେ । ୮୩ ।

### ରାଗ ଯଦୁକୁଳ କାମ୍ବୋଜ । ତାଳ ଆଦ ।

ଚନ୍ଦ୍ରଲେ ଆଉ କେ ଦେବ ନନ୍ଦସୁତଙ୍କୁ ସଖି ଗୋ । କାନ୍ତରେ
ମୁଁ ଦୋଷୀ ହେଲ ସଙ୍ଗିନ ଏବେ କ ବୁଧି । ୧ ।
ପ୍ରାତେ ମୋ ପାଶେ ତାଙ୍କୁ ଗୁହିଁ । ଭାବିଲି ନଗଣ ହୋଇ ।
ହେଲେ ଗୋ କେଡ଼େ କାତର । ନ ଗୁହିଁ ଯେ ମଉନେ ରହିଲି । ୨ ।
ଭାବିଲେ ଯେତେ ଯେତେ । ବାଣୀ ଟେସିଲ ତାହା ନ ଶୁଣି ।
ମଣ୍ଡୀ ଗୁହିଁ ବସିଲ ମୁଁ । ଜାଣି ଜାଣି ତେଜିଲ କେଡ଼େ ପ୍ରୀତି । ୩ ।

ଜାଣିଲେ ଯହୁଁ ମୋର ବେଷ । ହେଲେ ସେ କେତେ ନିରାଶ ।
ଗଲେ ଗୋ ଶ୍ୱାସ ପକାଇ । ତେବେ ହେଲେ ରଖିଲି ନାହିଁ ଆଣି । ୪ ।
କିଶୋର ତହୁଁ ଏ ଭାଷ । ଶୁଣି ଦୁଷ୍ଟ ହୋଇ ତୋଷ ।
ଭେଟାଇଲି ବଂଶୀପାଣି । ରଘୁନାଥ କହିଲି ତାହା ଗୁଣି । ୫ । ୬୩

## ମାଳଶ୍ରୀ ।

ବିନୟକୁ ଯେଉଁବାରେ ଭାଷିଲେ ସେ ସରାଗେ ।
ନ ଶୁଣି ଶ୍ରବଣମାର୍ଗେ ପାଣି ଦେଲି ମୁଁ ବେଗେ ।
ପରୁଷବଚନ ବାରେ ଭାଷିଲି କଣ୍ଠତାରେ ।
ହରି ହରି ମୁଁ କି ଯୋଗେ ବଞ୍ଚିବି ଗ୍ରହଭୋଗେ ।

## ରାଗ ଆଶାବରୀ । ଆଡ଼ତାଳି ।

କି ଅଭିମାନ, କଲି ପ୍ରାଣଧନ ଗୋ ।
କର ଧରି କହୁ କହୁ ନ କହି ବଚନ ଗୋ । ପଦ ।
ଯେ ପରାଣରୁ ଅଧିକ ତାହାକୁ · ଅଧୀରେ ।
ପର ପରି କରି ଦେଲି ଦାରୁଣ ବୁଦ୍ଧିରେ ଗୋ । ୧
ମୟୂଖ ପଟଳୀ ସେବା ନିତି ଯାହାଲାଗି ।
ତାକୁ ରୁଷିବା କଥାକୁ ନ ପାରିଲି ଜଗି ଯେ । ୨ ।
ଯେ ଜଗତ ମୋହିପାରେ ମୁରଲୀ ବଜାଇ ।
ତାହାକୁ ଦେଲି ମଦନେ ବିବେକ ହଜାଇ ଗୋ । ୩ ।
ମୁଗ୍ଧା କ୍ରୋଧାବେଶେ ମୋର ମାନସ ମଜ୍ଜାଇ ।
ଚିନ୍ତାହଜା ଚିନ୍ତାମଣି କରରୁ ହଜାଇ ଗୋ । ୪ ।
ଦ୍ୱିଜ ରଘୁନାଥ ବୋଲେ ରାଧା ଗିରେ ତୋଷେ ।
ସଖୀ ଆଣି ଭେଟାଇଲେ ଘନଶ୍ୟାମ ରୂପେ ଯେ । ୫ । ୬୪ ।

ରାଗ ପୁନ୍ନାଗ । ଆଡ଼ତାଳ ।

ସଖିରେ ମୁଁ କି କରିବି । ଦାରୁଣ ମାନକୁ ଭଜି ଶ୍ୟାମ ବନ୍ଧୁକୁ ଗୁଣ୍ଡିଲି । ପଦ ।

ବସନ ପ୍ରସାରି ମୋତେ, ବଚନ ଭାଷିଲେ ଯେତେ, ଚରଣ ତଳେ ପଡ଼ନ୍ତେ, ନ ଚାହିଁ ମୁଖ ମୋଡ଼ିଲି । ୧ ।

ଅନାଦର ଦେଖି ମୋର, ନୟନୁ ବୁହାଇ ନୀର, ଚଳିଲେ ନାଗରବର, ଯାଉଁ ପଥ ନ ଆଡ଼ିଲି । ୨ ।

ସଜଣୀଙ୍କ ହିତବାଣୀ ଅହିତ ପରାଏ ମଣି, ପରିହରି ବେଣୁ-ପାଣି, ଶୋକଜଳଧିରେ, ବୁଡ଼ିଲି । ୩ ।

ଗୋପୀକ ଉଚିତ ମତେ, ପ୍ରବୋଧି କହିଲ ଯେତେ, ବିଷଫଳ ମଣି ଚିତ୍ତେ, କରୁ ସୁଧାକୁ ଏଡ଼ିଲି । ୪ । ୭୫ ।

## ଦୂତୀ ଶ୍ରୀରାଧାଙ୍କୁ ପ୍ରତି

ମାଳିନୀ ।

ବିରସ ପରୁଷ ବାଣୀ ଭାଷିଲୁ ଚାହିଁ ଚାହିଁ ।
ବଚନ ଶୁଣିଲୁ ନାହିଁ ପାଣି କର୍ଣ୍ଣେ ନଦେଇ ।
ପୁଣି କହୁ ତୁ ସରାଗେ ତାଙ୍କୁ ଯା ଆଣ ବେଗେ ।
ମଣ୍ଡିତ ତନୁ ନ ଥାଇ ଧନ୍ୟ କନ୍ଦର୍ପ ଧନ୍ୟ ॥

ରାଗ ହୁସେନି । ଆଡ଼ତାଳି ।

ପରପରି କରି ଏବେ ପ୍ରାଣସଙ୍ଗିନି ।
ପରିହରି ହରି କି ତୁ ଲୋଡ଼ୁ କି ଘେନି । ୧ ।
ଆସି ସେ ଯେତେ ଯେତେ ଭାଷିଲେ ବାଣୀ
ଠେସିଲୁ ଅବରୋଧ ଚୋଡ଼ି ନ ଶୁଣି । ୨ ।

ଭାଷ ନ କହ ପନ୍ଥ ତୋଷକୁ ତେଜ ।
ରୋଷ ବହିଲୁ ଏକା ଦୋଷ ନ ଛୁଟି । ୩ ।
କହ ଏପରି ମୋହ ଶ୍ରୀକିଶୋରଙ୍କି ।
ନେଇ ଭେଟାଇଲେ ଦୂତୀ ବଂଶୀଧାରଙ୍କି । ୪ ।
ହରଷେ ରାଧାମାଧବ ରୂପ ଧ୍ୟାଇ ।
ଏ ରସରେ ଦ୍ୱିଜ ରଘୁନାଥ କହଇ । ୫ ।

## ପୁଣି ସଖୀ ।

ମନ୍ଦାକ୍ରାନ୍ତା ।

ରାମା କାନ୍ତା ବଶରୁ ରସରେ ଯାମିନୀ ଆସବେ ସେ ।
ଯୋଷା ବେଶାଦ୍ୟ ସାଜନ୍ତୁ କୁସୁମଶରେ ସାଦରେ ମୋଦରେ ଥା ।
ବାଳା ଲୀଳା ପ୍ରକଟି ରସରେ ଶତ୍ରରେ ହେବୁ ଥାପି ।
କାନ୍ତା ଶାନ୍ତା ଉର ପରିହରେ ସ୍ୱାନ୍ତରେ ଦୁଃଖୀ ହୋ ନା । ୮ ।

ରାଗ ରାମକେରି । ଆଡ଼ତାଳି ।

ସଜ ହୋଇଥାରେ ଗଜରାଜଗତି ଆଜ । ·
ରଜନୀ ଆସିବେ ସଜ ନୀଳୋତ୍ପଳଶ୍ୟାମ ବ୍ରଜଯୁବରାଜ । ପଦ ।
ସୁନା ପ୍ରତିମାରେ ମିନାଚରି କଳାଝୁନା ଶାଢ଼ୀ ଯତ୍ନେ ପିନ୍ଧ ।
ବଳାପଦ୍ମମଣି ନୀଳକୁନ୍ତଳାରେ କଳାପ କମର ବାନ୍ଧ । ୧ ।
ପୁଣ୍ଡରୀକବରଯୁଗେ ଇନ୍ଦୀବରଯୁଗଳ ଚଳାଇବାକୁ ।
ମୃଦ୍ୱମଳାଞ୍ଜନ ଚାପିଚିଞ୍ଚ କନକମଞ୍ଜରୀ ମଳାଇବାକୁ । ୨ ।
କୁଞ୍ଜଳଚସ୍ତୁ ଝଷଧ୍ୱଜକେଳିରସ ଭୁଞ୍ଜାଇ ଭୁଞ୍ଜିବୁ ପରା ।
କଞ୍ଚାପୁଟାକ୍ଷିରେ ଚାଞ୍ଚାଇ ଲଲାମ ଉପରେ ପୁନ୍ନାଗ ଝରା । ୩ ।
ମସାରମଣୀ ହେମସାରସମୂହ ମିଶ୍ରିବାର ବୁଝିବାକୁ ।
ବର୍ତ୍ତୁଳ ପୟୋଧର ଧରେ ରତ୍ନ ବନ୍ଧୁରତୁଲେ ଯୁଝିବାକୁ । ୪ । ୭୭ ।

ଗଦ୍ୟ—ଚୋଖି ଚୋଖି ଲେଖି ଲେଖି ମାଟିବାରେ ବିଶିଖ ବିଶିଖ ମଦନ ଶିଖି ଶିଖଣ୍ଡମଣ୍ଡନ ଲମ୍ଭ କଦନ ସଖୀବଚନେ ରଖି ମନ ବଳିଖି ବଦନ ଦେଖିବାରେ । ମୁଖୀ ହୋଇବାରେ ଅଖିଳରକ୍ଷ ଯାମଳାର୍ଜ୍ଜୁନ ସାଖୀ ବିପକ୍ଷ । କୌସ୍ତୁଭମଣିବକ୍ଷା ଲକ୍ଷ ଲକ୍ଷ ଲକ୍ଷଣା-ବନ୍ତ ମହାକ୍ଷଲକ୍ଷ ଅସଂଖ୍ୟ ସୌଖ୍ୟପ୍ରଦ ମୋକ୍ଷପ୍ରଦକୁ ମଞ୍ଜୁଳ ବଞ୍ଜୁ କୁଞ୍ଜପାଖରେ । ଦେଖି ଝଟେ କଞ୍ଜଖଞ୍ଜନଗଞ୍ଜନରଞ୍ଜନେକ୍ଷଣୀକ । କହ୍ନ ଦୂତୀ ଏହ୍ନ ବାଣୀକ । ୧୩ ।

ମାଳସୀ ।

ମଦନଶର ପରଶେ ଧୀର ହୋଇ ନରସେ ।
ସୁସମ କୁସୁମବାସେ ହୋଇଲେ ଆସେ ପାଶେ ।
ବୁଝିଅଛୁ ଯଦି ଦୋଷେ ବାନ୍ଧ ତୋ ବାହୁପାଶେ ।
ଶିରକରଜପରଶେ ଚନ୍ଦ୍ରହାସପ୍ରକାଶେ ।

ରାଗ ଲଳିତ । ଆଡ଼ତାଳି ।

ଡ଼ଠ ନ କରମଠ ତୋ ଦରଶନକୁ ।
ମୋହନ ଆସିଛନ୍ତି ଘରରେ । ପଦ ।
ପଲଙ୍କ ତଳରେ । ପ୍ରପଦ ପାଟରେ ।
ଡ଼ିଆ ହୋଇଛନ୍ତି ଧୀର ଧରରେ । ୧ ।
ହେବୁ ବୋଲି ବେଶ । କରି କେତେ ଆଶ ।
ଆଣିଛନ୍ତି ସୁମନସ ଝରରେ । ୨ ।
ହସ ଅପହୃଡ଼ । ଚଳପ ସଜାଡ଼ ।
ପ୍ରାଣନାଥ ମନୋରଥ ପୂରରେ । ୩ ।
ସଖୀ କରଧରି । ଶ୍ରୀନବଙ୍କଶୋଭି ।
ଚେତି ଡ଼ିଆହେଲେ କୃଷ୍ଣବରରେ । ୪ ।

ସଖୀ ଗଲେ କହ୍ବ । ସମସ୍ତଙ୍କ ଗୃହିଁ ।
ଗୋପାଳ କୃଷ୍ଣ କହଇ ଭାବରେ । ୫ । ୬୮ ।

ଆର୍ଯ୍ୟା ।

ବାଧି ଉଦୟେ ଚନ୍ଦ୍ରମଣି ଦ୍ରବଇ ବତ ବାନ୍ଧି ବରସନେ ସୁରମଣି ।
ଗୃହିଁ ପୁଣିତ ନ ଗୃହନ୍ତି । କହିଲେ ଛନ୍ତି ମଧୁହାର ବନଜ । ୮୮ ।

## ଶ୍ରୀରାଧାଙ୍କୁ କୃଷ୍ଣ ।

ମନ୍ଦାକ୍ରାନ୍ତା ।

ଅଙ୍କେ ପଙ୍କେରୁହଦୃଶି ନ ବସୁ କାହିପାଇଁ ଜଣଙ୍କେ ।
ସଙ୍କେତେ ଯା ନଚହଲ ମୁହିଁ କାଳ କଂକେଳୀ କୁଞ୍ଜେ ।
ରଙ୍ଗେ ପ୍ରାର୍ଥିଜନକୁ ବିମୁଖେ ଗୃହନ୍ତି ଦ୍ୱିହନ୍ତି ହିଟରେଣ ।
ଝିଙ୍କି ଭାରେ ମଦନ ଶରରେ ହୃତ୍କୁଟେ ମାରିବାରେ । ୮୬ ।

ଦ୍ରୁତବିଲମ୍ବିତ ବୃତ୍ତ ।

ନବରସା ବନିତା ବନ ନେତ୍ରରୁ ।
ନବ ତମାଳ ବନେ ପିକ ଭାଷିତ ।
ନବରସାରଜନେ ତ କଣା ମତେ ।
ନବରସା ସୁରତେ ତୁ ଥରେ ମତେ ।

ରାଗ କଲ୍ୟାଣୀ । ତାଳ ଝୁଲୁଆ ।

ସଙ୍ଗିନ ତେସରଙ୍ଗିନ ଭ୍ରୂଭଙ୍ଗିନ ଭୁଷ ନାରେ । ହେମାଙ୍ଗିରେ ବରଭଙ୍ଗରେ । ସୁଅପାଙ୍ଗିରେ ତ୍ର ଅନାରେ । ସଙ୍ଗେ ମୋହର ରଙ୍ଗ ବହର । ଭଙ୍ଗିଦିଅ ଅନଙ୍ଗର ଦର ତଙ୍ଗୀକ କର ଅଙ୍ଗୀକାର । ତୁଙ୍ଗସ୍ତନୀ ସୁମଙ୍ଗଳ କର । ୧ ।

ପଙ୍କଜ ମୁହିଁ । କଙ୍କର ମୁହିଁ । ଭଙ୍ଗୁ ନୟନ ଅରେ । ନଶଙ୍କରେ ମୋ ଅଙ୍କରେ ପଲ୍ୟଙ୍କରେ ବସ ଧୀରେ । ଶଙ୍କ ନା ମୋ ଭଙ୍କର ଧନ । କୁଙ୍କୁମବରମାଙ୍କ ରଚନ ହୁଂ କୃତ ଝିଙ୍କେ ମାରେ କଙ୍କପଦ ଶଙ୍କରପର । ୭୯ ।

## ଶ୍ରୀରାଧାଙ୍କୁ ପ୍ରତି ସଖୀ

### ଶିଖରଣୀ ବୃତ୍ତ ।

ବସାଇ ସଙ୍କେତେ ଜଣି ମୁଖରୁ ମୁଁ ଆଣିବ ବୋଲ ।
ନଶାନ୍ତେ ଆସେ ସେ ସବୁ ଅପରାଧୀ ନୁହଇ କ ।
ପ୍ରସାଦବା ଶାନ୍ତ ପ୍ରକଟି କହୁଚ ଯେବେ ବନତ ।
ଉପର୍କୀଡ଼ା ଭାବେ ରମଣି ମଣିରେ ଦୋଷ ଧର ନା । ୯୦ ।

### ରାଗ ପୁର୍ବୀ । ଆଡ଼ତାଳ ।

ଏଥର ଶ୍ୟାମ ଦୋଷ କର କ୍ଷମାରେ । ପଦ । କହୁ କର ଯୋଡ଼ି । ଯାଉଛନ୍ତ ପଡ଼ି । ତୋଳ ହେଲେ ଶ୍ରୀମୁଖ ଚନ୍ଦ୍ରମା ରେ । ୧ ।

ନ ଘୋଡ଼ା ଶ୍ରବଣ । କହୁଛନ୍ତ ଶୁଣ ।
କୃପାନଧି ବୃଷଭାନୁଜେମା ରେ । ୨ ।
ପଶୁପ ନଗରୀ । ଶିଖୀ ପିବ ସର ।
ନ ରୁହିଁଲେ କେଶରମଧମା ରେ । ୩ ।
କେତେ ଥର ସବୁ ଯାଇ ନାହୁଁ ସହି ।
ଅପରାଧପାକ ଯେବେ ପ୍ରେମାରେ । ୪ ।
ଗୋପାଳ କୃଷ୍ଣ ସେ । ସଂଯୁରେ ଭାଷେ ।
ଅଦ୍ଧ ହୋଇ ଗଲାନ ତ୍ରିଯାମା ରେ । ୫ ।। ୮୦ ।

# ଶ୍ରୀକୃଷ୍ଣ ।

ମାଳିନୀ ।

ଚତୁର ସରସ ବାଣୀ ଚିତ୍ତରେ ତୋଷ ଆଣି ।
ନତ ନ କର ତୁ ବନ୍ଧୁ କୋପରେ ଶ୍ରୀମୁଖେନ୍ଦୁ ।
କୃତ ସୁକୃତ ବିଘାତେ ତୋ ତନୁ ସ୍ପର୍ଶ ବେଗେ ।
ଅତନୁ ଶର ନ ମାର କାତରେ ମାତ ଫେଣ । ୯୧ ।

ରାଗ ଢଣ୍ଟାରବା । ଆଡ଼ତାଳି ।

ସଙ୍ଗିନି ରେ ରସରଙ୍ଗିନି ରେ । ଦୋଷ କ୍ଷମା କର ଜୀବବନ୍ଧୁ ଭୂଷଣା ରେ । ପଦ ।

ଯା କର ତା କର । ତୋ ଦେ କିଙ୍କର । ଉଙ୍କରତନ ମୃଗାଙ୍କଲପନା ରେ । ଶଙ୍କରଶତ୍ରୁ ନିଃଶଙ୍କରେ ମାରୁଛି । ଅଙ୍କ ପର୍ଯ୍ୟଙ୍କ ମୋ ମଣ୍ଡୁକନା ରେ । ୧ ।

ଯୋଡ଼ି ପାଣି, ଜଣାଉଛି ରାମାମଣି । ଧରଣୀରେ ନଖ ଗାର ଲେଖନା ରେ । କିଣିଲୁ ଜନ ମୁଁ । ତୋର ଅଜନମୁଁ । ତୋଳ ତଳ ଲୁଳୁବେଣୀ ଲୋଟାନା ରେ । ୨ ।

ମାନସରୁ ମାନ ସରୁ ସ୍ମରଣରୁ ରଖ ନୂଆ ସରୁ ମାଳବସନାରେ । ଜବନାପସରୁ ପୀୟୂଷହାସରୁ ଲବ ଦ୍ରସରୁ ଖଞ୍ଜନନୟନାରେ । ୩ ।

ଗୋକୁଳ କୁଳଜା । ପଟ୍ଟଷଦ ରଜା । ନ କଲେ କରୁଣା ଜାଣ ତୋ ନାରେ । ରାଧେ ରାଧେ ବୋଲି । ତୋ ସରସ ସଙ୍କଳରେ ଝାସିବାର ଶୁଣୁ ସିନାରେ । ୪ ।

ଅବନତ ହୋଇ । ଧରୁ ପଦ ଦୁଇ । ରାଧା ପ୍ରସନ୍ନତା କରି କଳନାରେ । ଗଲେ ନିଜ ନିଜ କୁଞ୍ଜେ ଆଳବ୍ରଜ । ଗୋପାଳ କୃଷ୍ଣ କହେ ସେ ଭାବନାରେ । ୫ । ୯୧ ।

ବଂଶସ୍ଥ ବୃତ୍ତ ।

ସ୍ମିତାବଲୋକେ ମନ ଜାଣି କାନ୍ତରେ ।
ମିଳେ ସମସ୍ତେ ରହିଲେ ଲତାନ୍ତରେ ।
ରହେ ତ ରାଧା ବନମାଳି ସଙ୍ଗରେ ।
ହସେ ସୁଭାବେ ରସି କେଳି ରଙ୍ଗରେ । ୯୨ ।

ରାଗ ଇମନ କଲ୍ୟାଣୀ । ତାଳ ଝୁଲୁଆ ।

ନବଘନବରନ ଶ୍ୟାମ । ବାମନବୃମା କୁଞ୍ଜେ ଯୁଗଳରୂପ ସୁର କେଳନ୍ତ ଦ୍ୟୁତିକ ଛବିରେ ଗଞ୍ଜେ । ପଦ ।

ବାମ କର ନ ପାର । ମଦନ ସିବାରୁ ଫେର । ଦେଖି ଆଚମ୍ବିତେ । ବିଜୁଳି ସ୍ଫୁରେ । ରହେ କ ଜଳଦପୁଞ୍ଜେ । ୧ ।

ଚୁମ୍ବକୁ ପ୍ରତିରମ୍ଭେ ସୁଟିବାରୁ ଅବଲମ୍ବେ । ମାଳକମଳ ଉଲଟେ ରହିଲା ବିମଳ ହେମ କଞ୍ଜେ । ୨ ।

କଶୋଣ କ ଶରେ ଗୁତୁର । ପୁଣି ଅନ୍ତଶପୁ ମାଧୁରି । ପରସ୍ପରେ ଜାତ ହୋଇବା ଭାବ । ଉଦ୍ଧବ ମନକୁ ରଞ୍ଜେ । ୩ ।

ଚମ୍ପ ଏହି କେଳକ । ହରିବାକୁ ଦିନ ରାତିକ । ଦେବନାଭ ଚନ୍ଦ୍ର ନରତ ଯାମଳାର୍ଜ୍ଜୁନଭଞ୍ଜେ । ୪ । ୮୨ ।

ଶିଖରିଣୀ ବୃତ୍ତ ।

କବା ଶୁଦ୍ଧସ୍ୱର୍ଣ୍ଣେ ମରକତ-ମଣୀ ଶୋଭନ କରେ ।
କବା କାଳସ୍କନ୍ଧେ କନକଲତିକା ମାଳୀ ରହିଲା ।
କବା ନୀଡ଼ାକୁଞ୍ଜେ ଶୁକ ପିକ ରଖେ କାମ କୁତୁକେ ।
କବା ଶୋଭା ରାଜେ ନବ ଜଳଧରେ ଧୀର ବିଜୁଳୀ ।

ମନ୍ଦାକ୍ରାନ୍ତା ।

ରାଧା ସାଧାରଣବଚନରେ ସାଦରେ ପ୍ରେମପୂର୍ଣ୍ଣେ ।
କୁଞ୍ଜାଗାରେ ମଦନରସରେ ମାତିଲେ କେଳିଭାବେ ।

ନାନା କ୍ରୀଡ଼ା କରନ୍ତି ସୁମନେ ମୋଦୁ ଅତ୍ୟନ୍ତ ରଙ୍ଗେ
ଗଣ୍ଡପ୍ରାନ୍ତେ ଶୟନ କଲ୍ପଲେ ତୁଷ୍ଟରେ ପୁଷ୍ପତଳ୍ପେ । ୯୪ ।

ରାଗ କଲ୍ୟାଣୀ । ତାଳ ଝୁଲୁଆ ।

ଗୋପୀନାଥାୟ ମଙ୍ଗଳଂ ଗୋ ଗୋଷ୍ଠବାଳ । ପାପ ମୋଚନାୟ ମଙ୍ଗଳଂ । ପାପନକର ଖଣ୍ଡନାୟ । ପାପ ସନ୍ଦ୍ଧ ମଣ୍ଡନାୟ । ଆପଦଚୟ ମୋକ୍ଷଣାୟ । ଭୂପଚଣ୍ଡ ରକ୍ଷଣାୟ ଗୋ । ୧ ।

ନନ୍ଦବାଳାୟ ମଙ୍ଗଳଂ । ଆନନ୍ଦକନ୍ଦମନ୍ଦହାସାୟ ମଙ୍ଗଳଂ । ଚନ୍ଦନ-ବିନ୍ଦୁ-ଭୂଷିତାଙ୍ଗ । ଇନ୍ଦୁବଦନୀବୃନ୍ଦସଙ୍ଗ । ମନ୍ଦରଧର ଲୋକପାଳ । କୁନ୍ଦରଦନ କାନ୍ତଲୋଳ ଗୋ । ୨ ।

କେଶିନାଶାୟ ମଙ୍ଗଳଂ । ସୁଭକ୍ତ-ବଂଶ । ପାଳ ଲୋଳାୟ ମଙ୍ଗଳଂ । ବାସବାଦ୍ଧ ଶେଷ ବ୍ୟୋମ । କେଶଭଜିତ ଦିବ୍ୟନାମ । ଦୋଷ ରହିତ ମୋକ୍ଷଧାମ । ଦାସ ନିକର ପୂର୍ଣ୍ଣକାମ ଗୋ । ୩ ।

କଂସନାଶାୟ ମଙ୍ଗଳଂ । ଅଦୋଷଦର୍ଶୀ । ବଂଶୀବାଦନାୟ ମଙ୍ଗଳଂ । ନାଶିତ ଭବବନ୍ଧ ମୋହ ପୋଷିତ ସୁରମୌନିବନ୍ଧା ଭୂଷିତ ଶିଖିଚନ୍ଦ୍ର ନିଚୟ । ତୋଷିତ କନ୍ଦଚନ୍ଦ୍ର ହୃଦୟ ଗୋ । ୪ ।

**ସମାପ୍ତ**

ପ୍ରଶାନ୍ତ ପ୍ରେସ, କଟକ-୨